ଚିତ୍ତଭାଇଙ୍କ ଜନ୍ମ ଶତବାର୍ଷିକୀ ଅବସରରେ

# ଈଶୋପନିଷଦ ସ୍ୱାଧ୍ୟାୟ

(ବିନିଦା ସୁହୃତ ଶ୍ରମ ଶିବିରର ଅନୁଭୂତିରୁ)



ଡାକ୍ତର ମଦନ ମୋହନ ପ୍ରଧାନ

ଶ୍ରୀଅରବିନ୍ଦ ପାଠଚକ୍ର
ମାତୃଭୂମି, ଡେରା, ତାଳଚେର, ଅନୁଗୋଳ

# ଈଶୋପନିଷଦ ସ୍ୱାଧ୍ୟାୟ

(ବିନିଦା ସୁହୃତ ଶ୍ରମ ଶିବିରର ଅନୁଭୂତିରୁ)

ଚିଉଭାଇଙ୍କ ଜନ୍ମ ଶତବାର୍ଷିକୀ ଅବସରରେ

ଡାକ୍ତର ମଦନ ମୋହନ ପ୍ରଧାନ

ଶ୍ରୀଅରବିନ୍ଦ ପାଠଚକ୍ର
ମାତୃଭୂମି, ଡେରା, ତାଲଚେର, ଅନୁଗୋଳ

# ଈଶୋପନିଷଦ ସ୍ୱାଧ୍ୟାୟ

(ବିନିଦା ସ୍ରୁହୁତ ଶ୍ରମ ଶିବିରର ଅନୁଭୂତିରୁ)


| | |
|---|---|
| ଲେଖକ | ଡାକ୍ତର ମଦନ ମୋହନ ପ୍ରଧାନ |
| ପ୍ରଥମ ସଂସ୍କରଣ | ଡିସେମ୍ବର ୨୦୨୨ |
| ପ୍ରକାଶକ | ଶ୍ରୀଅରବିନ୍ଦ ପାଠଚକ୍ର<br>ମାତୃଭୂମି, ଡେରା, ତାଳଚେର, ଅନୁଗୋଳ |
| ମୁଦ୍ରଣ | ଶିକ୍ଷାସନ୍ଧାନ ପ୍ରିଣ୍ଟିଂ, ଭୁବନେଶ୍ୱର |
| ପ୍ରଚ୍ଛଦ ଓ ଅଳଙ୍କରଣ | ଶ୍ୱେତାଶ୍ରୀ ଏବଂ ଅମର୍ତ୍ତ୍ୟ |
| ମୂଲ୍ୟ | ୬୦/- ଟଙ୍କା ମାତ୍ର |


# ISOPANISHAD SWADHAYA

(Binida Shruhut Shrama Sibirara Anubhutiru)


| | |
|---|---|
| Author | Dr. Madan Mohan Pradhan |
| First Edition | December, 2022 |
| Publisher | Sri Aurobindo Pathachakra,<br>Matrubhumi, Dera, Talcher, Angul |
| Printed at | Sikshandhan Printing, Bhubaneswar |
| Illustration | Swetashree and Amartya |
| Price | Rs. 60.00 only |

# ଉତ୍ସର୍ଗ

ମୋ ଜୀବନର ଆଦ୍ୟ ଭୂମିରେ ସାଥୀଟିଏ ହୋଇ ମୋ ଚଲାପଥକୁ ସୁଦୃଢ଼ କରିବା ପାଇଁ ପରମ ସହୃଦ୍ ଚିତ୍ତଭାଇ ସର୍ବଦା ତତ୍ପର ହୋଇ ରହିଥିଲେ । ଜନ୍ମ ଶତାବ୍ଦୀ ଅବସରରେ ତାଙ୍କ ଚରଣ କମଳରେ ଏ ପୁସ୍ତକଟି ଉତ୍ସର୍ଗ କରୁଛି ।

ମଦନ

# କୃତଜ୍ଞତା

ବ୍ୟସ୍ତବହୁଳ ଜୀବନ ଭିତରେ ସ୍ମୃତିପଟର ଭାବନାଗୁଡ଼ିକୁ ଛପା ଆକାରରେ ପ୍ରକାଶ କରିବାପାଇଁ ହାତ ବଢ଼ାଇଥିବା ବନ୍ଧୁ ଓ ପରିବାରର ସଦସ୍ୟମାନଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି।

ପ୍ରଫୁଲ୍ଲ ଭାଇ (ପ୍ରଫେସର ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର) ପୁସ୍ତକଟିର ମୁଖବନ୍ଧ ଲେଖିଛନ୍ତି ଏବଂ ପୁସ୍ତକଟି କିପରି ସଜାଡ଼ିଲେ ଭଲ ହେବ, ସେ ବିଷୟରେ ପରାମର୍ଶ ଦେଇଛନ୍ତି।

ବିମଳ ପ୍ରସାଦ, ନାରାୟଣ ଭାଇ, ସୁବାସ ଭାଇ, ବାବୁଲି, ପ୍ରମୋଦ ପୁସ୍ତକଟିର ଡିଟିପି ଏବଂ ସଂଶୋଧନ ପ୍ରକ୍ରିୟାରେ ନିଷ୍ଠାର ସହ କାମ କରିଛନ୍ତି।

ବୋହୂ ଶ୍ୱେତାଶ୍ରୀ ଏବଂ ସାନ୍ ପୁଅ ଅମର୍ତ୍ତ୍ୟ ଚିତ୍ର ଆଙ୍କି ପ୍ରଚ୍ଛଦ ପୃଷ୍ଠାଟିର ଶୋଭା ବର୍ଦ୍ଧନ କରିଛନ୍ତି।

ବଡ଼ପୁଅ ତୁହିନାଂଶୁ ଏବଂ ସହଧର୍ମିଣୀ ରୀନା ସେମାନଙ୍କର ମତାମତ ପ୍ରଦାନ କରି ପୁସ୍ତକ ପ୍ରସ୍ତୁତିକୁ ସମୃଦ୍ଧ କରିଛନ୍ତି।

ଗତ ଶ୍ରମଶିବିରମାନଙ୍କରେ ମୋର ଅନୁପସ୍ଥିତି ସତ୍ତ୍ୱେ ସୁହୃତ୍ ପରିବାରର ସମସ୍ତ ଭାଇଭଉଣୀ ମୋତେ ଅନ୍ତରରେ ଆଦରର ସହ ରଖିଥିବାରୁ ସମସ୍ତଙ୍କ ନିକଟରେ ମୁଁ କୃତଜ୍ଞତା ଜ୍ଞାପନ କରୁଛି।

# ମୁଖବନ୍ଧ

ଶ୍ରୀ ମଦନ ମୋହନ ପ୍ରଧାନଙ୍କ ଲିଖିତ ଈଶୋପନିଷଦ୍ ସମ୍ପର୍କିତ ଏହି ବହିଟି ଲେଖକଙ୍କର ତତ୍‌ସମ୍ପର୍କରୁ ଅନୁଭବ ସହିତ ମନନ ଚିନ୍ତା, ମାଟିଠାରୁ ଆରମ୍ଭ କରି ବ୍ୟୋମ ପର୍ଯ୍ୟନ୍ତ ବ୍ୟାପ୍ତ ଅଖଣ୍ଡ ଚେତନା ସମ୍ବଳିତ ଏକ ଜୀବନ ରସାୟନ । ଲେଖକ ବିଜ୍ଞାନର ଛାତ୍ର ହୋଇଥିବାରୁ ଜଡ଼ ଓ ଚେତନକୁ ସମଗ୍ର ଦୃଷ୍ଟିରେ ଦେଖିପାରିବାର ଯୋଗ୍ୟତା ଅର୍ଜନ କରିଛନ୍ତି । ଏ ଦୁଇଟି ପରସ୍ପରଠାରୁ ଅଲଗା ନୁହନ୍ତି ବୋଲି ତାଙ୍କର ଗଭୀର ଅନ୍ତର୍ଦୃଷ୍ଟି ଲେଖାଟିରେ ପ୍ରତିଫଳିତ । ଶ୍ରୀପ୍ରଧାନ ବୃତ୍ତିରେ ଚିକିତ୍ସାବିଜ୍ଞାନର ଜଣେ ଧୁରୀଣ ଚିକିତ୍ସକ । ସାମାଜିକ ପୃଷ୍ଠଭୂମିରେ ଗଣସଚେତନତା ସୃଷ୍ଟିକରିବା ସହିତ ନାଗରିକମାନଙ୍କୁ ସ୍ୱାସ୍ଥ୍ୟ ସହାୟତା ଯୋଗାଇଦେବା ତାଙ୍କ କର୍ମର ଏକ ଅଙ୍ଗ ଯାହା ନିକଟରେ ଦେଶ ବିଦେଶରେ ବେଶ୍ ଚର୍ଚ୍ଚିତ ଏବଂ ଆଦୃତ ।

ଆଲୋଚ୍ୟ "ଈଶାବାସ୍ୟୋପନିଷଦ୍" ମୂଳ ତତ୍ତ୍ୱସହିତ ନିଜସ୍ୱ ବିଚାର, ଦୃଷ୍ଟି, ଅନୁଭବ ଓ ଉପଲବ୍ଧିର ସମାହାର । ଏହା ଭାଷ୍ୟ ନ'ହୋଇଥିଲେହେଁ ହୃଦୟ ଏବଂ ମନର ଭାଷାରେ ଜଗତ ଏବଂ ଜଗତାତୀତଙ୍କ ଏକ ନିଜସ୍ୱ ଆଲେଖ୍ୟ, ଯେଉଁ ବ୍ୟାପ୍ତି ମଧ୍ୟରେ ସ୍ୱୟଂ ଲେଖକ ମଧ୍ୟ ଗୁନ୍ଥା ହୋଇ ରହିଛନ୍ତି । ଦଶଦିନିଆ ଶ୍ରମଶିବିର ପରିପ୍ରେକ୍ଷୀରେ ଚିତ୍ତରଞ୍ଜନ ଦାସଙ୍କ ସାନ୍ନିଧ୍ୟରେ ଉପନିଷଦର ଆଲୋଚନା ଏବଂ ଅନୁଶୀଳନ ସୁହୃଦ୍ ଗୋଷ୍ଠୀର ଏକ ଯୁଗାନ୍ତକାରୀ ପଦକ୍ଷେପ । ପାହାଡ଼ ପର୍ବତ ଘେରା ଅରଣ୍ୟ ବେଷ୍ଟିତ କ୍ଷୁଦ୍ର ଗ୍ରାମ "ବିନିଦା" ଏହାର ମୂକ ସାକ୍ଷୀ ।

ଜ୍ଞାନ-କର୍ମ-ସମୁଚ୍ଚୟବାଦ ଈଶୋପନିଷଦ୍‌ର ଭୂମି । ଆତ୍ମକଲ୍ୟାଣ ପାଇଁ ଏବଂ ବିଶ୍ୱକଲ୍ୟାଣ ନିମିତ୍ତ ମାତ୍ର ଅଠରଟି ଶ୍ଳୋକର ନିରବଚ୍ଛିନ୍ନ

ପ୍ରକାଶ ଅଧ୍ୟାତ୍ମ ସହିତ ଜଗତକୁ ଗୋଟିଏ ସୂତାରେ ଗୁନ୍ଥିଦିଏ। ମାନବ ଦୃଷ୍ଟିର ଉତ୍ତରଣ ଘଟି ଯେତେବେଳେ ତାହା ଈଶ୍ୱର ଦୃଷ୍ଟିରେ ପରିଣତ ହୁଏ, ସେତେବେଳେ ବ୍ୟାପ୍ତି ସମ୍ଭବ ହୁଏ। ଆଧୁନିକ ସମାଜବାଦୀ ଚିନ୍ତାଧାରା କୌଣସି ଗୁଣରେ ଉପନିଷଦୀୟ ଚିନ୍ତନଠାରୁ ଉନ୍ନତ ହୋଇ ନପାରେ। ଭଗବତ୍ ଗୀତାର ନିଷ୍କାମ କର୍ମର ମୂଳଭୂମି ରୂପେ ଏହି ଉପନିଷଦର ପ୍ରଥମ ଶ୍ଳୋକଟି ମନେ ପକାଇଦିଏ, "ସବୁ କିଛି ଈଶ୍ୱରଙ୍କର, ଆମେ ମଧ୍ୟ ତାଙ୍କର। ଆସକ୍ତି ରହିତ ହୋଇ ନିଜ ଉପାର୍ଜନକୁ ଭୋଗ କରିବା ସହିତ ତ୍ୟାଗ ମନୋଭାବ ହିଁ ଆମକୁ ଜଗତର କଲ୍ୟାଣରେ ବିନିଯୋଗ କରାଇପାରିବ"।

ଅନୁଚିନ୍ତନ କଲେ ଏହା ନିଜ ଭିତରେ ଶକ୍ତି ସଞ୍ଚାର କରାଏ। ନିଜସ୍ୱ ବିଚାର ଏବଂ ମନନ ସହିତ ଲେଖକଙ୍କର ନାନା ଉଦାହରଣର ଅବତାରଣା, ଜୀବବିଜ୍ଞାନଠାରୁ ଆରମ୍ଭ କରି genetics, ପୁରାଣ, ଅତୀତର ସଭ୍ୟତା, ସଂସ୍କୃତି, ସ୍ୱାସ୍ଥ୍ୟ ଓ ଚିକିତ୍ସା ବିଜ୍ଞାନର ଆଲୋଚନା ବହିଟିକୁ ଜଗତ ଅଭିମୁଖୀ କରାଇପାରିଛି। ଜଗତକୁ ଛାଡ଼ି ଏହି ଅନନ୍ୟ ମନ୍ତ୍ରଧର୍ମୀ ଉପନିଷଦ୍‌ର କିଛି ଅର୍ଥ ନାହିଁ।

ସେହି ଦୃଷ୍ଟିରୁ ଡାକ୍ତର ପ୍ରଧାନଙ୍କର ଜାଗ୍ରତ, ସ୍ୱପ୍ନ ଅବସ୍ଥା ଓ ତନ୍ଦ୍ରା ଅବସ୍ଥାରେ ମଧ୍ୟ ମନ୍ତ୍ରଗୁଡ଼ିକ ବହିର ପୃଷ୍ଠାରୁ ଆଲୋଚନାର ପରିବେଶରୁ ସଂପ୍ରସାରିତ ହୋଇ ନିଜସ୍ୱ ମୁକ୍ତ ଚିନ୍ତନରେ ପରିବ୍ୟାପ୍ତ ହୋଇପାରିଛି। କେବଳ ମନ ଭିତରେ ରହିନାହିଁ। ଠାଏ ସିଏ ଲେଖିଛନ୍ତି : "ହୃଦୟ ଦେଇ ଭଲପାଅ। ସମସ୍ତଙ୍କ ଶରୀର ଅଲଗା ଅଲଗା ହୋଇ ରହିଥାଉ। ମାତ୍ର ସଭିଏଁ ହୃଦୟରେ ପରସ୍ପର ସହିତ ମିଶିଯାଅ। ଜଗତଟା ଖୁବ୍ ସୁନ୍ଦର। ସଭିଏଁ ଏକାଠି ବସି ସେଥିରୁ ଶିକ୍ଷାଲାଭ କର।"

ବିଦ୍ୟା ଓ ଅବିଦ୍ୟାର ତୋରଣକୁ ଅତିକ୍ରମ କରି କୃତ୍ରିମ ମନେହେଉଥିବା ପୃଥିବୀକୁ ଅବଲୋକନ କରିପାରିଲେ ଜଣେ ଅସଲ ଉପଲବ୍ଧିର ଭାଜନ ହୋଇପାରେ। ଆମ ଭିତରେ ଥିବା ସଦାବିକାଶଶୀଳ ଚୈତ୍ୟସତ୍ତା ବିଦ୍ୟୁତ୍‌ତାର ପରି ମନ ପ୍ରାଣ ଶରୀରକୁ ଗୋଟିଏ ସୂତାରେ ଅଗ୍ରଗାମୀ ଏବଂ ଗତିଶୀଳ କରାଇପାରେ। ଉପନିଷଦ୍ ପ୍ରବକ୍ତାଙ୍କର ସନାତନ ଓ ଚିରନ୍ତନ ସତ୍ୟ ଶ୍ଲୋକଗୁଡ଼ିକ ମାଧ୍ୟମରେ ମନ୍ତ୍ରସିକ୍ତ ହୋଇ ପାଠକକୁ ଯୁଗେ ଯୁଗେ ଆକୃଷ୍ଟ କରିପାରିବ। ଏଥିରେ ଜୀବନ ତ ଅଛି, ଜଗତ ମଧ୍ୟ ଅଛି। ଏ ଦୁଇଟିର ମୂଳ ଈଶ୍ୱର ଉଭୟକୁ ଧରି ରଖିଛନ୍ତି, ବରଂ କୁହାଯାଇପାରେ ସେ ଉଭୟ ଜୀବନ ଓ ଜଗତରେ ପରିଣତ ହୋଇଛନ୍ତି।

ଡାକ୍ତର ପ୍ରଧାନଙ୍କ ଲିଖିତ ଏହି ପୁସ୍ତକଟି କ୍ଷୁଦ୍ର ହେଲେହେଁ ପାଠକମାନଙ୍କୁ ଉପନିଷଦୀୟ ଜୀବନ ଭିତରେ ରହି ପରମଙ୍କୁ ଉପଲବ୍ଧି କରିବାରେ ନିଶ୍ଚୟ କିଛି ପରିମାଣରେ ସହାୟ ହେବ। ନିଜସ୍ୱ ଢଙ୍ଗରେ ଏବଂ ପ୍ରକାଶରେ ପ୍ରତ୍ୟେକେ ମୂଳ ଉପନିଷଦ ଅଧ୍ୟୟନ କରିବାରେ ଉତ୍ସାହୀ ହୋଇପାରିବେ, ଏଥିରେ ସନ୍ଦେହ ନାହିଁ।

ପୁରୁଣା ଭୁବନେଶ୍ୱର,
୧୬।୧୨।୨୦୨୨

ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର
ଅବସରପ୍ରାପ୍ତ ପ୍ରାଧ୍ୟାପକ ଦର୍ଶନ ବିଭାଗ
ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀ

# ଈଶୋପନିଷଦ ସମ୍ବନ୍ଧରେ
# ସଂକ୍ଷିପ୍ତ ଟିପ୍ପଣୀ

ଅନେକ ଉପନିଷଦ ଅଛି। ପ୍ରକୃତରେ କେତୋଟି ଉପନିଷଦ ଅଛି, ସେ ବିଷୟରେ ଏ ପର୍ଯ୍ୟନ୍ତ ଠିକ୍ ଭାବରେ କୁହାଯାଇ ପାରିନାହିଁ। ମାତ୍ର ୧୦୮ ଟି ଉପନିଷଦ ବିଷୟରେ ବିଶେଷ ଭାବରେ ଆଲୋଚନା କରାଯାଇଥାଏ। ଏହି ୧୦୮ ଟି ମଧ୍ୟରୁ ୧୧ଟି ଉପନିଷଦକୁ ଅଧିକ ମାନ୍ୟତା ଦିଆଯାଇଥାଏ। ସେଗୁଡ଼ିକ ହେଲେ; ଈଶୋପନିଷଦ, କେନୋପନିଷଦ, କଠୋପନିଷଦ, ପ୍ରଶ୍ନୋପନିଷଦ, ମୁଣ୍ଡକୋପନିଷଦ, ମାଣ୍ଡୁକ୍ୟୋପନିଷଦ, ଐତରେୟୋପନିଷଦ, ତୈତ୍ତିରୀୟଉପନିଷଦ, ଛାନ୍ଦୋଗ୍ୟୋପନିଷଦ, ବୃହଦାରଣ୍ୟକୋପନିଷଦ ଓ ଶ୍ୱେତାଶ୍ୱେତରୋପନିଷଦ। ଏହି ୧୧ଟି ଉପନିଷଦ ମଧ୍ୟରୁ ଈଶୋପନିଷଦକୁ ସର୍ବଶ୍ରେଷ୍ଠ ଉପନିଷଦ ଭାବରେ ଗଣାଯାଏ। ପ୍ରଥମ ମନ୍ତ୍ରର ପ୍ରଥମ ପଦଟି ହେଉଛି ଈଶାବାସ୍ୟମ୍। ଏହି ପଦରୁ ଈଶୋପନିଷଦର ନାମ ରଖାଯାଇଛି। ଈଶୋପନିଷଦକୁ ଈଶାବାସ୍ୟ ଉପନିଷଦ ମଧ୍ୟ କୁହାଯାଏ।

ଈଶୋପନିଷଦ ଯଜୁର୍ବେଦର କାଣ୍ୱଶାଖାର ଶେଷ ଅଧ୍ୟାୟ। ଏହି ଅଧ୍ୟାୟରେ ୧୭ଟି ମନ୍ତ୍ର ଅଛି। ଯଜୁର୍ବେଦରେ ଉଲ୍ଲେଖ ଥିବା ମନ୍ତ୍ରଗୁଡ଼ିକରେ ସାମାନ୍ୟ ପରିବର୍ତ୍ତନ କରାଯାଇଛି ଈଶୋପନିଷଦରେ। ୧୭ଟି ମନ୍ତ୍ରରେ ଆଉ ଗୋଟିଏ ମନ୍ତ୍ର ଯୋଡ଼ାଯାଇ ୧୮ଟି ମନ୍ତ୍ରରେ ଈଶୋପନିଷଦ ସମାପ୍ତ ହୋଇଛି। ଏହି ୧୮ଟି ମନ୍ତ୍ର ସାର୍ବଜନୀନ ଓ ସର୍ବକାଳୀନ। କୌଣସି

ଜାତି, ଧର୍ମ, ଦେଶ, ଭୂଖଣ୍ଡ, ପରମ୍ପରା ଭିତରେ ଏହି ମନ୍ତ୍ରଗୁଡ଼ିକୁ ସୀମିତ କରି ବିଚାର କରାଯାଇ ପାରିବ ନାହିଁ। ମନ୍ତ୍ରଗୁଡ଼ିକୁ ସତେଯେପରି ଗୋଟିଏ ଫୁଲମାଳରେ ଗୁନ୍ଥି ଦିଆଯାଇଛି। ମନ୍ତ୍ରଗୁଡ଼ିକୁ ସରଳ ସୁଲଳିତ ସ୍ୱରରେ ଗାଇ ହୁଏ, ଯାହାକି ମନକୁ ମନ୍ତ୍ରମୁଗ୍ଧ କରିପାରେ, ମସ୍ତିଷ୍କ ତଥା ସ୍ନାୟୁତନ୍ତ୍ରୀକୁ ସ୍ନିଗ୍ଧ କରିଥାଏ।

ଏ ଉପନିଷଦରେ କେତୋଟି ମନ୍ତ୍ରକୁ ଏକତ୍ର କରି ଆଲୋଚନା କରାଯାଏ। ଯେପରିକି ୧ରୁ ୩, ୪ରୁ ୫, ୬ ରୁ ୮ ସାଧାରଣତଃ ପ୍ରଥମ ୮ ଟି ମନ୍ତ୍ର ପରେ ଅନ୍ୟ ମନ୍ତ୍ରଗୁଡ଼ିକୁ ଏକତ୍ର ଆଲୋଚନା କରାଯାଇଥାଏ।

ଏଠାରେ ସୂଚିତ କରିଦିଆଯାଇ ପାରେ ଯେ ଉପନିଷଦର ଶ୍ଳୋକଗୁଡ଼ିକୁ ମନ୍ତ୍ର ବୋଲି ବିବେଚନା କରାଯାଏ।

# ବିନିଦା ସୁହୃତ ଶ୍ରମ ଶିବିର ସ୍ମୃତିରୁ

ସୁହୃତ ପତ୍ରିକାର କୌଣସି ଏକ ସଂଖ୍ୟାରେ ମୁଁ ବିନିଦା ଶ୍ରମ ଶିବିର ସମ୍ବନ୍ଧରେ କେତେକ ଅଲିଭା ସ୍ମୃତି ଲେଖିଥିଲି । ଏବେ ମୁଁ ସେ ସମୟର ଦିନଲିପି ଖାତାଟି ପାଇଲି । ସେ ସମୟରେ ଯାହାସବୁ ଟିପିଥିଲି ଏବଂ ଏବର ଘଟଣାବଳୀ ତଥା ଅନୁଭୂତିକୁ ଏକତ୍ର ସାଉଁଟି ଏ ପୁସ୍ତକଟିରେ ବର୍ଣ୍ଣନା କରିବାକୁ ଚେଷ୍ଟା କରିଛି । ୧୯୮୫ ମସିହାର ଏହି ଶିବିରଟି ଥିଲା ଶୀତକାଳୀନ । ଅରଣ୍ୟ ପାହାଡ଼ ଘେରା ନିପଟ ମଫସଲୀ ଆଦିବାସୀ ଗାଁ ବିନିଦା । କେନ୍ଦୁଝର ସହରରୁ ପ୍ରାୟ ୩୧ କି.ମି. ପରେ ପଟିଲୋ ଛକରୁ ସାଇକେଲରେ କିମ୍ବା ଚାଲିଚାଲି ଯିବାକୁ ପଡୁଥିଲା । ସେତେବେଳେ ଆଜିକାଲି ପରି ରାସ୍ତାଘାଟ ଏପରି ଚକାଚକ୍ ନଥିଲା । ସରକାରୀ ନାଲିବସ୍ ଥିଲା ଯାତାୟତ ପାଇଁ ଏକମାତ୍ର ଅବଲମ୍ବନ । ଚିତ୍ତଭାଇଙ୍କ ସାଙ୍ଗରେ ଆମେ ଛଅ ସାତଜଣ ଥାଉ । କେନ୍ଦୁଝରରୁ ଥାଆନ୍ତି ମହେଶ୍ୱର ଭାଇ । ଏବେ ସେ ଦିବଂଗତ । ସେ ଥିଲେ ଆମର ସର୍ବମନ୍ତେ ପଥପ୍ରଦର୍ଶକ । କେନ୍ଦୁଝରରୁ ଧକଡ଼ ଚକଡ଼ ରାସ୍ତାରେ ସରକାରୀ ନାଲି ବସରେ ଯାତ୍ରା କରି ଆମେ ଦୁଇ ଘଣ୍ଟାପରେ ସନ୍ଧ୍ୟାବେଳେ ପଟିଲୋ ଛକରେ ପହଞ୍ଚିଲୁ । ସେଠାରୁ ପ୍ରାୟ ୫ କି.ମି. ପଦଯାତ୍ରା କରିବାକୁ ପଡ଼ିଲା । ବିନିଦାରୁ ବନ୍ଧୁମାନେ ଆସିଥିଲେ ପାଛୋଟି ନେବାପାଇଁ । ଦୁଇ ଜଣ ଭାରୁଆ ଆମ ବ୍ୟାଗ୍‌ପତ୍ର ବୋହିଲେ । ପେଟ୍ରୋମାକ୍ସ ଲାଇଟ୍ ଓ ଟାୟାର ଜଳାଇ ଆମେ ଗପସପ କରି ସନ୍ଧ୍ୟାପର ରାତ୍ରିର ବକ୍ଷ ଚିରି ଆଗକୁ ପାଦ ପକାଇ ଚାଲିଲୁ । ଭାଲୁ ଭୟ ବି ଥାଏ,



ମାତ୍ର ଆମ ହାତରେ ଟାୟାର ଜଳୁଥାଏ। ଚିତ୍ତଭାଇଙ୍କ ଡେଙ୍ଗାପାଦ ସହ ତାଳ ପକାଇ ଚାଲିବାପାଇଁ ଆମ ଭିତରେ ଅଦୃଶ୍ୟ ପ୍ରତିଯୋଗିତା ଲାଗିଥାଏ। ଏବେ ଚିତ୍ତଭାଇ ସଶରୀରେ ଆମ ପାଖରେ ନାହାନ୍ତି। ମାତ୍ର ସେସମୟରେ ସେ ଆମମାନଙ୍କୁ ଯୋଗାଇଥିବା ପ୍ରେରଣା ଏବେ ବି ପ୍ରତି ମୁହୂର୍ତ୍ତରେ ତାଙ୍କ ସହ ଆମକୁ ଯୁକ୍ତକରି ରଖିଛି। ଇଚ୍ଛାହେଲା ସେଇ ଶିବିରର କିଛି ସ୍ମୃତି ସମସ୍ତଙ୍କୁ ଅବଗତ କରାଇବା ପାଇଁ।

ଜଙ୍ଗଲି ପାହାଡ଼ି ରାସ୍ତାଟି ନାଲି ମୋରମ ଗୋଡ଼ିମାଟିରେ ଟାଣ ହୋଇ ଆଗକୁ ଅନାଇ ରହିଥିଲା। ଆମେ ରାସ୍ତା ଉପରେ ପାଦ ପକାଉ ପକାଉ ଅନ୍ଧାର ହାଜର ହୋଇ ଯାଇଥିଲା। କେହି କେହି କହିଲେ ଭାଲୁ ବାହାରିପାରେ। ମହେଶ୍ୱର ଭାଇ କହିଲେ "ଚାଲ ଚାଲ, ଭାଲୁ ଫାଲୁ କିଛି କରି ପାରିବେ ନାହିଁ"। ଡିସେମ୍ବର ମାସ। ଭାରି ଶୀତ ପଡ଼ିଥିଲା। ବାଟ ଚାଲୁଚାଲୁ ଶରୀରରେ ଉଷ୍ମତା ଭରି ଆସୁଥିଲା। ଆମ ହାତରେ କୁନି କୁନି ଟର୍ଚ୍ଚ ଲାଇଟ୍ ରାସ୍ତାର ମଝି ଛାତିଟାକୁ ଆଲୋକିତ କରୁଥିଲା। ଜଣକ ହାତରେ ସାଇକେଲ ଟାୟାର ବି ଜଳୁଥିଲା। ପୂରା ଆଗରେ ପେଟ୍ରୋମାକ୍ସ ଲାଇଟ୍‌ଟିଏ ବି ବୁହା ହୋଇ ଚାଲୁଥିଲା। ରାତ୍ରିର ଅନ୍ଧକାର ଉପରେ ଆମ ଆଲୁଅମାନଙ୍କର ରାଜୁତି ଜାରି ରହିଲା। ପଥଚାରୀ ଯାତ୍ରୀମାନଙ୍କର ସଂଖ୍ୟା ଦଶ କି ବାର ଭିତରେ ଥିଲା ବୋଲି ମନେ ପଡୁଛି। ଆମେ ଚାରି ପାଞ୍ଚଜଣ ପଛରେ ରହି ଚିତ୍ତଭାଇଙ୍କ ସାଙ୍ଗରେ ଚାଲୁଥିଲୁ। ଗପସପ ଲାଗି ରହିଥିଲା, ମାତ୍ର ଚାଲିବାର ଗତି ଥମୁ ନଥିଲା। ଗପସପରେ କୌଣସି ଆବୁରୁ ଜାବୁରୁ କଥା ପଡୁନଥିଲା। ଭାରତର ସାମାଜିକ ବ୍ୟବସ୍ଥାରେ ଥିବା ଅବ୍ୟବସ୍ଥା ଏବଂ ମଣିଷକୃତ ସମସ୍ୟାବହୁଳ ବ୍ୟବସ୍ଥା ଭିତରେ ଏକ ପରିବର୍ତ୍ତନର ମୋଡ଼ କିପରି ଉପନୀତ ହୋଇ ପାରିବ, ଏସବୁ ଥିଲା ଗପ ଭିତରର

ସାରକଥା । ଚିତ୍ତଭାଇଙ୍କ ପାଖରେ ଥିଲା ଦେଶବିଦେଶର ଅସରନ୍ତି ଅନୁଭୂତି । ଏହା ଶ୍ରୀଅରବିନ୍ଦଙ୍କ ଶିକ୍ଷା ଓ ଦର୍ଶନକୁ ଆମ ଯୁବମାନସରେ ଉପସ୍ଥାପନ କରାଇବାରେ ଅନେକ ସହାୟକ ହେଉଥିଲା । ଏହି ଗପସପ, ରାତ୍ରିର ଅନ୍ଧକାର ଭିତରେ ଆମ ମନ ଆକାଶରେ ନବୀନ ସୂର୍ଯ୍ୟଙ୍କୁ ଉଦୟ କରି ଆଣୁଥିଲା ।

ଆମେ ବିନିଦା ଗାଁ ପାଖାପାଖି ପହଞ୍ଚିଗଲୁ । ବିନିଦାରୁ ଆମକୁ ନେଇଯିବାପାଇଁ ଆସିଥିବା ଭାଇ ଜଣକ କହିଲେ, "ଘଟି ପାର ହେଲା ପରେ ନଳକୂଅ ପଡ଼ିବ, ତାପରେ ସ୍କୁଲ ।" 'ଘଟି' ଶବ୍ଦଟିକୁ ନେଇ ଆମ ଭିତରେ ଯୁକ୍ତିତର୍କ ଲାଗିଗଲା । ଜଣେ କହିଲା ଘଟି ଅର୍ଥ ପୋଲ, ଆଉଜଣେ କହିଲା ଘଟି ଅର୍ଥ ଉଠାଣି । ଅଳ୍ପ ସମୟପରେ ଦ୍ୱନ୍ଦ୍ୱ ଦୂରହେଲା । ଆମେ ଏକ ଛୋଟ ଘାଟି ବା ଉଠାଣି ସ୍ଥାନ ଚଢ଼ିଲୁ ଓ ତାପରେ ନଳକୂଅ ଆଖିରେ ପଡ଼ିଲା । ଚିତ୍ତଭାଇ କହିଲେ 'ଘାଟି' ଅପଭ୍ରଂଶ ହୋଇ ଏଠାରେ 'ଘଟି' ବ୍ୟବହାର ହେଉଛି । ଆମେ ସ୍କୁଲରେ ପହଞ୍ଚିଗଲୁ । ଦି'ବଖରା ଚାଳଘର ସାଙ୍ଗକୁ ଆଉ ଦି'ବଖରା ଅଧା ଉଠିଥିବା ଇଟା କାନ୍ଥର ଖପର ଘର । ମାଟି ଅଗଣା, ସେଥିରେ କେତୋଟି ଫୁଲ ଗଛ । କାଠ ଗଣ୍ଡିର ନିଆଁ ଧୂନି ପାଖରେ ସମସ୍ତେ ହାତପାଦ ସେକି ହୋଇଗଲୁ । ତାପରେ ଧୁଆଧୋଇ ହୋଇ ଗରମ ଭାତ ଓ ଡାଲିରେ ରାତ୍ରି ଭୋଜନ ସମାପନ କଲୁ । ବ୍ୟାଗ୍ ପତ୍ର ଧରି ନଡ଼ା ବିଛା ହୋଇଥିବା ବଖରାଦୁଇଟିରେ ପଶିଗଲୁ । ଚିତ୍ତଭାଇ ଖପରଘର ପଟକୁ ଗଲେ । ଶୀତ ରଜନୀର କମ୍ବଳ ଭିତରୁ କିଛି ସମୟ ପରେ ଘୁଙ୍ଗୁଡ଼ିର ଶବ୍ଦ ଶୁଭିଲା । ମୁଁ କିଛି ସମୟ ଏପଟ ସେପଟ ହେଲି । ଜଙ୍ଗଲରୁ ସାଁ ସାଁ ଶବ୍ଦ ସାରା ନୀରବତାକୁ କିଛି ମାତ୍ରାରେ ତେଜେଇ ରଖୁଥିଲା । ତାପରେ ମୁଁ ଜଣକ କମ୍ବଳ ଭିତରେ ପଶିଗଲି । ନିଦ୍ରାଦେବୀ ଖୁବ୍ ଶୀଘ୍ର ମୋତେ ଆଦରି ନେଲେ ।



ଦୟାନିଧି ଭାଇ ଓ ରାମ ଭାଇ ଏଠିକାର ମୁଖ୍ୟକର୍ତ୍ତା ବୋଲି ସହଜରେ ଜଣା ପଡ଼ିଗଲେ। ଏମାନଙ୍କର ଆଗ୍ରହ ଓ ନିଷ୍ଠାପର ଉଦ୍ୟମ ଯୋଗୁଁ ଏଠାରେ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ନାମରେ ଏକ ଅନୁଷ୍ଠାନର କଳିକା ପ୍ରସ୍ଫୁଟିତ ହେବାପାଇଁ ଅପେକ୍ଷା କରିଛି। ବଣ ପାହାଡ଼ ଘେରା ଏକ ନିପଟ ମଫସଲରେ ନବସ୍ୱପ୍ନର ଶିକ୍ଷାଧାରାକୁ ସାର୍ଥକ କରିବାର ଯୋଜନାଟିଏ ମୁଣ୍ଡ ଟେକୁଥିବାରୁ ମୁଁ ମନେମନେ ପ୍ରପତ୍ତିଙ୍କର ସାଧୁ ପ୍ରଚେଷ୍ଟାକୁ ସ୍ମରଣ କଲି। ଚିତ୍ତଭାଇ ଏଭଳି ଜାଗାରେ ଶ୍ରମ ଶିବିରପାଇଁ ସୁଯୋଗ ସୃଷ୍ଟି କରିଥିବାରୁ ତାଙ୍କୁ ଅନ୍ତରରୁ ଧନ୍ୟବାଦ ଜଣାଇଲି।

ହଁ, ଗୋଟିଏ କଥା ଭୁଲି ଯାଇଛି। ରାତ୍ରିଭୋଜନ ପୂର୍ବରୁ ମହେଶ୍ୱର ଭାଇ, ଦୟାନିଧି ଭାଇ ଓ ରାମ ଭାଇଙ୍କ ସାଙ୍ଗରେ ବସି ଆମେ ଆସନ୍ତା କାଲିଠାରୁ ଦଶଦିନର କାର୍ଯ୍ୟସୂଚୀ ତିଆରି କରିଦେଲୁ।

ଶୋଇବା ସଅଳ ହେଲା, ତାସାଙ୍ଗକୁ ଘୁଙ୍ଗୁଡ଼ି, ରାତ୍ରିର ନିରବତାକୁ ବାରମ୍ବାର ଭାଙ୍ଗିବାରେ ଲାଗିଲା। ପ୍ରଥମ ତିନି ଚାରି ଘଣ୍ଟା ଅଖା, ନଡ଼ା ଓ କମ୍ବଳମାନଙ୍କର ଉଷ୍ମତା ଭିତରେ ଶିବିରାର୍ଥୀମାନେ ଆରାମରେ ରଜନୀ କୋଳର ସ୍ନିଗ୍ଧ ଶୟନକୁ ଉପଭୋଗ କଲେ। ମାତ୍ର ରାତି ଦୁଇଟା ତିନିଟା ବେଳକୁ ପାହାଡ଼ି ଶୀତ ସମସ୍ତଙ୍କୁ ହଲାଇ ପକାଇଲା। ସମସ୍ତେ ଭାବିଲେ, 'ରାତି ପାହିଲାଣି ରାବଇ କାଉ, ଉଠ ଉଠ ମଠ ନକର ଆଉ'। ତାପରେ ବୁଝିପାରିଲେ ଯେ ସେମାନେ ବିନିଦାରେ ଅଛନ୍ତି। ଅଗ୍ନିକୁଣ୍ଡରେ କାଠଗଣ୍ଡିଟିଏ ପଶିଲା। ଲେଲିହମାନ ସ୍ୱଚ୍ଛ ଉଚ୍ଚତାର ଅଗ୍ନି ଶିଖା ଚାରିପାଖରେ ସମସ୍ତେ ହାଇ ମାରୁଥିବା ଅବସ୍ଥାରେ ସାଷ୍ଟାମ ହେବାରେ ଲାଗିଲେ। ଘଣ୍ଟାଏ ପରେ ସୂର୍ଯ୍ୟଙ୍କର ଆଭା ପୂର୍ବ ଆକାଶକୁ ମଣ୍ଡିତ କରିବାର ଆଭାସ ମିଳିଗଲା। ଅଗ୍ନି କୁଣ୍ଡ ପାଖରୁ ସମସ୍ତେ ଅପସରି ଯାଇ ନିତ୍ୟକର୍ମ ସାରିଲେ।

ପ୍ରଥମଦିନ ମାତୃପତାକା ଉତ୍ତୋଳନପାଇଁ ସମସ୍ତେ ସଜବାଜ ହୋଇଗଲୁ। ମହେଶ୍ୱର ଭାଇ ପତାକା ଉତ୍ତୋଳନ କଲେ। ରାଶିଲଡୁ, ନଡ଼ିଆ କୋରା ଓ ଦୟାନିଧି ଭାଇଙ୍କ ଘରୁ ଆସିଥିବା ପୋଡ଼ପିଠା ଆଦି ପାଟିରେ ପକାଇ ଦେଇ ଶାବଳ, କୋଡ଼ି, ଗଇନ୍ତି, ଗାଣ୍ଡୁଆ ଧରି ସମସ୍ତେ ପୋଖରୀ ଖୋଳା ଜାଗାରେ ହାଜର ହୋଇଗଲୁ।

ପ୍ରଥମ ଦିନର କାମ ଆରମ୍ଭ ହେଲା। ଚିତ୍ତଭାଇଙ୍କ ଗୋଡ଼ ଫୁଲି ସାମାନ୍ୟ ଜ୍ୱର ଆସିଥିଲା। ତେଣୁ ତାଙ୍କୁ କାମରେ ଯୋଗ ଦେବାକୁ ମୁଁ ବାରଣ କରିଥିଲି। କାର୍ଯ୍ୟସୂଚୀ ଅନୁସାରେ ସବୁ ଚାଲିଲା। କିଛି ଧୁରନ୍ଧର ଭାଇ ଶାବଳ ଧରିଲେ, ଆଉ କିଛି ଗାଣ୍ଡୁଆରେ ମାଟି ଭରିଲେ ଓ ଅନ୍ୟମାନେ ଏକ ଲୟରେ ଧାଡ଼ି ଲଗାଇ ଗାଣ୍ଡୁଆରେ ମାଟି ସ୍ଥାନାନ୍ତର କରି ହୁଡ଼ାରେ ପକାଇଲେ। ପ୍ରାୟ ଦୁଇଘଣ୍ଟା ଭିତରେ ମୁଢ଼ି ଓ ଗରମ ଚା ଆସି ପହଞ୍ଚିଗଲା। ସାମାନ୍ୟ ବିରତି, କୋଳାକୋଳି, ଖଣ୍ଡିଆ ଖଣ୍ଡିଆ ଗୀତଗାନ ପରେ ପୁଣି ଶେଷ ଘଣ୍ଟାକର କାମ। ତାପରେ ସମସ୍ତେ ନଳକୂଅ ପାଖରେ ଘେରି ମାରିଲେ। ଗାଧୁଆ ପାଧୁଆ ସାରି ଚୁଡ଼ା ଉପମା ଓ କନ୍ଦମୂଳ ସିଝା ଆଦିର ଜଳଖିଆ ଖାଇବା ପାଇଁ ରୁଣ୍ଡ ହେଲେ। କେତେଜଣ ପଖାଳ, ଆଳୁ ଭଜା, ପିଆଜ ଓ ଲଙ୍କାର ଭୂରିଭୋଜନକୁ ଆପଣାଇଲେ।

× × × ×

ପ୍ରଥମ ଦିନର ସ୍ୱାଧ୍ୟାୟ ସମୟରେ ବାହାର ଓ ସ୍ଥାନୀୟ ଶିବିରାର୍ଥୀ ମିଶି ଅଠର ଜଣ ଥିଲୁ। ଚିତ୍ତଭାଇଙ୍କ ହାତରେ ଚିନ୍ମୟ ମିଶନଦ୍ୱାରା ପ୍ରକାଶିତ ଈଶୋପନିଷଦ ବହିଟି ଥିଲା। ମୋ ପାଖରେ ଟିପାଖାତା ଓ କଲମ ଥିଲା, ଆଉ କେତେଜଣ ବି ଧରିଥିଲେ। ଜଣେ କିଏ ମନଛୁଆଁ ପ୍ରାର୍ଥନାଟିଏ ବୋଲିଲେ। ତାପରେ ଚିତ୍ତଭାଇ ଉପନିଷଦ ଓ ଈଶୋପନିଷଦ ଉପରେ କିଛି ଆଭାସ ଦେଲେ। ଆମେ ଚଣ୍ଡାଳମାନେ ଉପନିଷଦ ଶୁଣି ବୁଝିବୁ, ଏଥିପାଇଁ ଆମ ଭିତରେ ଉତ୍ସୁକତା ଭରି ରହିଥାଏ । ତା ସାଙ୍ଗକୁ ଶୀତୁଆ



ସକାଳର ଉଷୁମ ସୂର୍ଯ୍ୟକିରଣ ଆମ ଶରୀର-ପ୍ରାଣ-ମନକୁ ଏକବାର ଯୁକ୍ତ କରି ରଖିବାରେ ସହାୟକ ହେଉଥାଏ। ଚିତ୍ତଭାଇ ଶ୍ଳୋକଟିଏ ଆବୃତ୍ତି କରିବାପରେ ଆମେ ଆବୃତ୍ତି କରୁଥିଲୁ। ସଂସ୍କୃତ ଶବ୍ଦଗୁଡ଼ିକର ଛନ୍ଦ ହୃଦୟ ତନ୍ତ୍ରୀକୁ ଭେଦି ଯାଉଥିଲା। ଈଶୋପନିଷଦର ମନ୍ତ୍ର ଆରମ୍ଭ ପୂର୍ବରୁ ଶାନ୍ତି ପାଠ ଆବୃତ୍ତି କଲୁ। ଏହାର ଗୁଢ଼ ଅର୍ଥ ଆମେ ବୁଝିବାକୁ ଚେଷ୍ଟା କଲୁ।

**ଓଁ ପୂର୍ଣ୍ଣମଦଃ, ପୂର୍ଣ୍ଣମିଦଂ, ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ।**
**ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।।**
**ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।।**

ଏହାକୁ ଚିତ୍ତଭାଇ ବୁଝାଇବା ପରେ ମୁଁ ଯାହା ବୁଝୁଥିଲି, ସେସବୁକୁ ଠିକେଠିକେ ଟିପାଖାତାରେ ଲେଖୁଥିଲି। ଏଠାରେ ସେ ସବୁର ବିବରଣୀ ପ୍ରଦାନ କରୁଛି।

ସେଇ ପରମବ୍ରହ୍ମ ହେଉଛନ୍ତି, ଅନନ୍ତ ଅସୀମ। ଏହି ଜଗତରେ ସେ ଯେତିକି ନିଜକୁ ପ୍ରକାଶିତ କରିଛନ୍ତି ତାହା ସମ୍ପୂର୍ଣ୍ଣ ହୋଇନଥିଲେ ବି ମଣିଷପାଇଁ ଏପର୍ଯ୍ୟନ୍ତ ପହଞ୍ଚ ହୋଇପାରିନି। ସମସ୍ତ ବୈଜ୍ଞାନିକ କଳକୌଶଳ ବ୍ୟବହାର କରି ବି ମଣିଷ ବହୁତ ସ୍ୱଳ୍ପ ଅଂଶକୁ ବୁଝି ପାରିଛି ଓ ସେଥିରୁ କିଛି ଅକ୍ତିଆର କରି ନିଜର ଉପଭୋଗପାଇଁ ବ୍ୟବହାର କରିପାରିଛି। ଏତକ ବି ଏତେ ବେଶି ଜଣାପଡୁଛି ଯେ, ସର୍ବମୟ ପ୍ରକାଶିତ ବ୍ରହ୍ମକୁ ପୂରା ବୁଝିବାକୁ ମଣିଷକୁ ଜନ୍ମ ଜନ୍ମ ଲାଗିଯିବ। ଏହି ପ୍ରକାଶିତ ବ୍ରହ୍ମ ତାଙ୍କର ଅନନ୍ତ ସ୍ୱରୂପ ହୋଇ ନଥିଲେ ବି ମଣିଷପାଇଁ ଅନନ୍ତ ବୋଲି ମନେ ହେଉଛି। ପ୍ରକଟିତ ବ୍ରହ୍ମ ଅସୀମ ଏବଂ ଏହା ଅପ୍ରକଟିତ ବ୍ରହ୍ମଙ୍କର ଅଂଶବିଶେଷ। ଏହି ପ୍ରକଟିତ ବ୍ରହ୍ମ, ଅପ୍ରକଟିତ ବ୍ରହ୍ମଙ୍କୁ କ୍ରମଶଃ ପ୍ରକଟ କରିବାପାଇଁ ନିତ୍ୟ ପ୍ରସ୍ତୁତ କରିବାରେ ଲାଗିଛନ୍ତି।

**ପୂର୍ଣ୍ଣରୁ ପୂର୍ଣ୍ଣ ଫେଡ଼ିଲେ ରହେ ପୂର୍ଣ୍ଣ ।**
**ପୂର୍ଣ୍ଣରେ ପୂର୍ଣ୍ଣ ମିଶାଇଲେ ହୁଏ ପୂର୍ଣ୍ଣ ।।**

ଆମେ ସ୍କୁଲରେ ଗଣିତ ପାଠରେ ଏକଥା ପଢୁଥିଲୁ।

ମୋର ମନେହେଲା ସମାନ କଥାଟିକୁ ଏହି ଶ୍ଳୋକରେ ଅତି ଗଭୀର ଅର୍ଥରେ ବ୍ୟବହାର କରାଯାଇଛି। ଭାରତୀୟ ଗଣିତ ବିଦ୍ୟାର ସିଦ୍ଧାନ୍ତ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ। ସବୁକିଛି ଅନନ୍ତ ଆଉ ଅନନ୍ତ। ମଣିଷ ଇଚ୍ଛାକଲେ ସୀମିତ ହୋଇ ରହିବ, ଇଚ୍ଛାକଲେ ଅନନ୍ତ ଅଭିମୁଖେ ଯାତ୍ରା କରିବ ଏବଂ ଅନନ୍ତ ମଧ୍ୟରେ ନିଜକୁ ଆବିଷ୍କାର କରିବ।

ଦୃଶ୍ୟ ଅଦୃଶ୍ୟମାନ ହୋଇ ସମଗ୍ର ସୃଷ୍ଟି ପରିବ୍ୟାପ୍ତ ହୋଇ ରହିଛି। ଅଦୃଶ୍ୟ ଜଗତଟି ଉପରେ ଆମର କୌଣସି କର୍ତ୍ତୃତ୍ୱ ନାହିଁ। ଯଦିଓ ଆମେ ବିଜ୍ଞାନଦ୍ୱାରା କେତେକ ଅଦୃଶ୍ୟ ଶକ୍ତି, ଅଣୁ ପରମାଣୁ, ଈଶ୍ୱର ଅଣୁ (God particle), ଅଣୁଜୀବ ଆଦି ସମ୍ବନ୍ଧରେ ଅବଗତ ହୋଇ ପାରିଛୁ। ତରଙ୍ଗ ତତ୍ତ୍ୱ ଉପରେ କାମକରି ବୈଜ୍ଞାନିକମାନେ ଅନେକ ଯନ୍ତ୍ରର ମାଧ୍ୟମ ଆମକୁ ଯୋଗାଇ ଦେଇଛନ୍ତି, ଯାହା ଏ ବିଶାଳ ବିଶ୍ୱକୁ ଅନୁମାନ କରିବା ପାଇଁ ସାହାଯ୍ୟ କରିଛି; ଉଦାହରଣ ସ୍ୱରୂପ ରେଡ଼ିଓ, ଦୂରଦର୍ଶନ, ମୋବାଇଲ ଫୋନ୍ ଇତ୍ୟାଦି। ଏସବୁ ମାଧ୍ୟମଗୁଡ଼ିକୁ ବ୍ୟବହାର କରି ଆମେ ଦେଶ ବିଦେଶର କୋଣ ଅନୁକୋଣ ସହ ଅକ୍ଳେଶରେ ଇଚ୍ଛା କଲାମାତ୍ରେ ଯୁକ୍ତ ହୋଇ ପାରୁଛୁ। ମଣିଷ ଆହୁରି ଅନେକ ଅଦୃଶ୍ୟ ଶକ୍ତିକୁ ଆବିଷ୍କାର କରି ନିଜ ବ୍ୟବହାରରେ ଲଗାଇବାର ଯଥେଷ୍ଟ ସମ୍ଭାବନା ରହିଛି। କିନ୍ତୁ ଅନେକ ଅଦୃଶ୍ୟ ଶକ୍ତି ବି ଆଦୌ ଧରା ଦେଇ ନପାରନ୍ତି। ତେଣୁ ଅଦୃଶ୍ୟ ଶକ୍ତିର ଜଗତଟି ଅନନ୍ତ ପର୍ଯ୍ୟନ୍ତ ପରିବ୍ୟାପ୍ତ ବୋଲି ମଣିଷକୁ ସ୍ମରଣ ରଖିବାକୁ ହେବ।



ଏହି ଅନନ୍ତ ଅଦୃଶ୍ୟ ଜଗତରୁ ଆମେ ଯଦି ଅନନ୍ତକୁ ବିହରଣ କରିବା, ସେଥିରୁ କାଣିଚାଏ ବି ସରିଯିବ ନାହିଁ। ଅନନ୍ତ ଅନନ୍ତ ହୋଇ ରହିବ। ଯେଉଁ ଗ୍ରହ ନକ୍ଷତ୍ରମାନଙ୍କର ଆଲୋକ ଆମ ପାଖରେ ପହଞ୍ଚି ପାରୁଛି, ଆମେ ସେସବୁକୁ ରାତ୍ରିର ପୃଷ୍ଠଭୂମିରେ ଦେଖିପାରୁଛୁ, ମାତ୍ର ଯେଉଁମାନଙ୍କର ଆଲୋକ ପହଞ୍ଚି ପାରୁନି ଆମପାଇଁ ସେସବୁ ଅଦୃଶ୍ୟ ଓ ଅସ୍ତିତ୍ୱହୀନ। ଜ୍ୟୋତିର୍ବିଜ୍ଞାନୀମାନେ ନୂଆ ନୂଆ ଗ୍ରହନକ୍ଷତ୍ର ଆବିଷ୍କାର କରି ଚାଲିଛନ୍ତି। ଏସବୁ ଆମପାଇଁ ବିଶାଳ ଜଗତରେ ଭରି ରହିଥିବା ଜଡ଼ବସ୍ତୁମାନଙ୍କର କଥା।

ଶାସ୍ତ୍ରମାନଙ୍କରେ ଆହୁରି ଅନ୍ୟ ପ୍ରକାରର ଅଦୃଶ୍ୟ ଜଗତମାନଙ୍କ ବିଷୟରେ ଲେଖା ଯାଇଛି। ଏ ପ୍ରକାର ଅଦୃଶ୍ୟ ଜଗତ ଉପରେ ବିଜ୍ଞାନର ଗବେଷଣା ବିଶେଷ ଭାବରେ ଆଗେଇ ନାହିଁ। ଶାସ୍ତ୍ରରେ ଲେଖାଯାଇଛି, ପୃଥିବୀ ଜଡ଼ ଭୂମି । ଏହା ଉପରେ ରହିଛି ଆହୁରି ଅନେକ ଭୂମି। ସେସବୁର ବାହ୍ୟ ପ୍ରକାଶ ହୋଇନାହିଁ। ବିଭିନ୍ନ ଲୋକ ନାମରେ ସେସବୁର ବର୍ଣ୍ଣନା କରାଯାଇଛି, ଯେପରିକି, ପ୍ରେତ ଲୋକ, ଦେବ ଲୋକ ଇତ୍ୟାଦି। ସର୍ବ ଉପରେ ବ୍ରହ୍ମଲୋକ, ଯେଉଁଠି ସୃଷ୍ଟିର ନବ ସର୍ଜନା, ସୃଷ୍ଟି ବିଘଟନ ଓ ସୃଷ୍ଟିର ସ୍ଥିତାବସ୍ଥାର ସମନ୍ୱୟତାପାଇଁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର; ଏଇ ତିନି ବିଭାବରେ ପରମେଶ୍ୱର ଅହରହ କାର୍ଯ୍ୟ ନିଭାଉଛନ୍ତି। ସେଇ ମହାଲୋକରୁ ସବୁକିଛି ଆତଯାତ। ଯୋଗୀମାନେ ସେମାନଙ୍କର ସାଧନାର ଆରୋହଣ ପଥରେ ସମାଧି ନିର୍ବାଣ ଆଦିର ଅନୁଭୂତି ଲାଭକରି ଜୀବନ୍ମୁକ୍ତି ବିଷୟରେ ଅଭିହିତ କରାଇଛନ୍ତି। ଶ୍ରୀଅରବିନ୍ଦ ଅତିମାନସ ସ୍ତର କଥା ବର୍ଣ୍ଣନା କରିଛନ୍ତି, ଯେଉଁଠି ରହିଛି ଜରାବ୍ୟାଧି ମୁକ୍ତ ଅମରତ୍ୱ, ସମସ୍ତ ଆଲୋକ, ସମସ୍ତ ଶକ୍ତି, ସମସ୍ତ ସୌନ୍ଦର୍ଯ୍ୟ ଓ ପୂର୍ଣ୍ଣ ଆନନ୍ଦ। ଈର୍ଷା, ଦ୍ୱେଷ, ହିଂସା, କ୍ରୋଧ, ମାନସିକ ଦୁଶ୍ଚିନ୍ତା ଆଦି ସାଧାରଣ ମଣିଷର ଆଚରଣ ସେଠାରେ ବିଲୁପ୍ତ ହୋଇ ଯାଇଥାଏ।

ଏହି ସ୍ତରକୁ ମଣିଷ ତା'ର ମନର ପ୍ରସ୍ତୁତିଦ୍ୱାରା ପହଞ୍ଚି ପାରିବ। ଆରୋହଣ ପଥରେ ସେ ଅନେକ ଅଦୃଶ୍ୟ ସ୍ତର ଦେଇ ଗତି କରିବ, ଯେପରିକି ଉଚ୍ଚତର ମନ, ଆଲୋକିତ ମନ, ସମ୍ବୋଧୀ ମନ, ଅଧିମାନସ, ତାପରେ ଅତିମାନସ ଓ ଶେଷରେ ସଚ୍ଚିଦାନନ୍ଦ। ମଣିଷ କୌଣସି ଏକ ଉଚ୍ଚତର ସ୍ତରରେ ଅଟକି ଯିବ ନାହିଁ। ସେ ପରମବ୍ରହ୍ମଙ୍କର ଯୋଗ୍ୟ ସନ୍ତାନ ଭାବରେ ମର୍ତ୍ତ୍ୟ ଜଗତରେ ପରମବ୍ରହ୍ମଙ୍କୁ ପ୍ରକଟିତ କରିବାପାଇଁ ନିଜକୁ ସମର୍ପିତ କରି କାମ କରିବ। ଅର୍ଥାତ୍ ମଣିଷର ରୂପାନ୍ତରିତ ମନ ପ୍ରାଣ ଶରୀରରେ ଅତିମାନସ ଜଗତର ପ୍ରକାଶପାଇଁ ସବୁ କାର୍ଯ୍ୟବିଧି ସାଧିତ ହେବାରେ ଲାଗିବ।

ଏ ତ ଗଲା ଅଦୃଶ୍ୟ ଜଗତ ସମ୍ବନ୍ଧରେ କିଛି ଝଲକ। ମାତ୍ର ମଣିଷ ଯେଉଁ ଧରାଧାମରେ ଜନ୍ମ ନେଇଛି, ଯେଉଁଠି ଆତଯାତ କରୁଛି, ଅନ୍ୟ ମଣିଷ ତଥା ଇତର ପ୍ରାଣୀଙ୍କ ସହ ସମ୍ପର୍କ ରଖି ଜୀବନର ପରିଧିକୁ ବୃହତ୍ତର କରିପାରିଛି, ସେଇ ଜଗତଟି ବି ଏତେ ବୃହତ୍ ଯେ ତାହାକୁ କଳନା କରିବା କାଠିକର। ପୃଥିବୀର ପୃଷ୍ଠଭୂମି, ବିଶାଳ ଜଳଧି, ପୃଥିବୀର ଅତଳ ଗର୍ଭ, ଉପରିସ୍ଥ ଗଗନ ମଣ୍ଡଳ, ମହାକାଶ ଆଦି ଏତେ ବିସ୍ତୃତ ଯେ ଏସବୁକୁ ଏକାବେଳକେ ଚିନ୍ତନ କଲେ ଜଣେ ପାଗଳପ୍ରାୟ ହୋଇଯିବ। ଏସବୁ ଜଡ଼ ଜଗତ ବାହାରେ କେତେକେତେ ଅଣୁଜୀବ, ଶୈବାଳ, ଉଦ୍ଭିଦ, କ୍ଷୁଦ୍ରରୁ ବୃହତ୍ ପ୍ରାଣୀସକଳ ଜୀବମଣ୍ଡଳକୁ ପୂର୍ଣ୍ଣ କରି ରଖିଛନ୍ତି। ସ୍ଥଳ ଯେମିତି ମଣିଷପାଇଁ ଅନନ୍ତ, ଜଳ ଓ ଆକାଶ ବି ସେମିତି ଅନନ୍ତ। ତେଣୁ ଦୃଶ୍ୟ ଅଦୃଶ୍ୟମାନ ଏହି ଚଳାଚଳ ଜଗତର ଅସୀମ ପରିବ୍ୟାପ୍ତିରୁ କିଛି ହରଣ କରିନେଲେ କିଛି ଅଭାବ ସୃଷ୍ଟି ହେବନି।

ଶିବିରର ପ୍ରଥମ ଦିନରେ ଦୁଇଟି ମନ୍ତ୍ର ସାରିବା ପାଇଁ ଧାର୍ଯ୍ୟ ରହିଲା। ପ୍ରଥମେ ଚିତ୍ତଭାଇ ମନ୍ତ୍ର ଦୁଇଟିକୁ ଆବୃତ୍ତି କଲେ, ତାପରେ ଆମେ ପାଳିଧରି ଆବୃତ୍ତି କଲୁ। ମନ୍ତ୍ରଗୁଡ଼ିକୁ ମନେ ରଖିବାପାଇଁ ବିଶେଷ ଅସୁବିଧା ହେଲାନାହିଁ।

ତା' ଛଡ଼ା ସେସବୁକୁ ଆମେ ନିଜ ନିଜ ଟିପାଖାତା ବା ଡାଏରୀରେ ଲେଖି ଦେଉଥିଲୁ। ଆମ ସଂଖ୍ୟା କମ ଥିବାରୁ ଆଲୋଚନାରେ ଗଭୀରତା ରହୁଥିଲା। ବୁଝିବାପାଇଁ ସଭିଏଁ ମନୋଯୋଗୀ ହେଉଥିଲୁ।

ପ୍ରଥମ ମନ୍ତ୍ର –

ଈଶାବାସ୍ୟମିଦଂ ସର୍ବ ଯତ୍କିଞ୍ଚ ଜଗତ୍ୟାଂ ଜଗତ୍।
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟ ସ୍ୱିଦ୍ଧନମ୍ ॥

ଏହି ମନ୍ତ୍ରରେ ଜଣେ କିପରି ସଂସାରରେ ଜୀବନ ଆଚରଣ କରିବ ସେସମ୍ବନ୍ଧରେ କୁହାଯାଇଛି।

ଈଶ୍ୱର ସର୍ବମୟ। ସେ ସଚରାଚର ସମଗ୍ର ବିଶ୍ୱବ୍ରହ୍ମାଣ୍ଡକୁ ଆଚ୍ଛାଦିତ କରି ରହିଛନ୍ତି ଏବଂ ଏସବୁ ତାଙ୍କରି ବାସଭୂମି। ସେ ସବୁରି ଭିତରେ ଓ ସବୁରି ବାହାରେ ଅଛନ୍ତି। ତାଙ୍କଠାରୁ ସବୁ ଜାତ ହେଉଛନ୍ତି, ଏବଂ ଭିନ୍ନ ଭିନ୍ନ ରୂପରେ ଆତଜାତ ହେଉଛନ୍ତି। ମଣିଷ ନିଜର ଅହଂକାରର ସୀମା ଭିତରେ ଏପରି ଆଉଟୁପାଉଟୁ ହୋଇ ରହିଛି ଯେ ସୃଷ୍ଟିର ଅସଲ ଗଭୀର କଥାକୁ ଜାଣିପାରୁନି। ସଂସାରଟାକୁ ଉପଭୋଗ କରିବ ବୋଲି, ଅନ୍ୟର ଧନ ଉପରେ ଲୋଭାସକ୍ତ ହୋଇ ରହୁଛି। ନିଜର ଉପଭୋଗପାଇଁ ଲୁଟି ନେଇଯିବାପାଇଁ ଉଦ୍ୟତ ହେଉଛି।

ଈଶ୍ୱର ମୋ' ଭିତରେ ଓ ସବୁରି ଭିତରେ ପୂରି ରହିଅଛନ୍ତି। ଜଗତର ସବୁ ଧନସମ୍ପଦ ତାଙ୍କର। ତେଣୁ ସଂସାରକୁ ଠିକ୍ ଭାବରେ ଉପଭୋଗ କରି ଉତ୍ତମ ଜୀବନଯାତ୍ରା କରିବା ପାଇଁ, ଅନ୍ୟର ଧନ ଉପରେ କେବେ ବି ଆଖି ପକାଇବା ଅନୁଚିତ।

'ତେନ ତ୍ୟକ୍ତେନ ଭୁଞ୍ଜିଥା' କଥା ବୁଝିଲାବେଳେ ମୋ'ର ପିଲାଦିନର ଏକ ପାଲାବାଲିଆର ରହସିଆ ଉକ୍ତିଟି ମନେ ପଡ଼ି ଯାଉଥିଲା – 'ତୁ ଖା, ତା'କୁ ଦେ'।

ପୁଣି ରବୀନ୍ଦ୍ରନାଥ ଟାଗୋରଙ୍କର ଅନ୍ତରତମ ପ୍ରାର୍ଥନାରୁ ପଂକ୍ତିଟିଏ ଗୁଣୁଗୁଣୁ ହୋଇ ବାହାରି ଆସୁଥିଲା -

"ଯୁକ୍ତ କରୋ ହେ ସବାର ସଙ୍ଗେ ମୁକ୍ତ କରୋ ହେ ବନ୍ଧ। ସଞ୍ଚାର କରୋ ସକଳ କର୍ମେ ଶାନ୍ତ ତୋମାର ଛନ୍ଦ"।

କସ୍ୟସ୍ୱିଦ୍ଧନମ୍ - ଏହି ବାକ୍ୟାଂଶଟିରେ ଦୁଇଟି ଅର୍ଥ ରହୁଛି। ସାଧାରଣ ସଂସାର ଦୃଷ୍ଟିରୁ ତୁମକୁ ଯାହା ଦିଆଯାଇଛି, ତୁମେ ତାହାର ମାଲିକ। ତୁମେ ତୁମ ଝାଳଲାଳ ଦେଇ ଯାହା ଅର୍ଜନ କରିଛ, ତାହା ତୁମେ ଉପଭୋଗ କର। ଅନ୍ୟମାନେ ସେମାନଙ୍କ ଝାଳଲାଳ ଦେଇ ଯାହା ଅର୍ଜନ କରିଛନ୍ତି, ସେଥିପ୍ରତି ଆଖି ପକାଅ ନାହିଁ। ଏହା ସାମାଜିକ, ଅର୍ଥନୈତିକ, ନୈତିକ ଦୃଷ୍ଟିକୋଣରୁ ଅନେକ ଗୁରୁତ୍ୱପୂର୍ଣ୍ଣ। ସୁସ୍ଥ ସମାଜପାଇଁ ଏହା ଅତ୍ୟନ୍ତ ଉପାଦେୟ।

ଆତ୍ମବିକାଶ ଦୃଷ୍ଟିରୁ ଆମେ ଏହାକୁ ଭିନ୍ନମତେ ବିଚାର କରିପାରିବା। ଅନ୍ୟର ଶ୍ରମଅର୍ଜିତ ସଂପତ୍ତି ପ୍ରତି ଲୋଭ ରଖିଲେ, ଏହା ତୁମକୁ କାମନା ବାସନାରେ କବଳିତ କରି ରଖିବ। ସେଥିପାଇଁ "ମା ଗୃଧଃ" - ଅର୍ଥାତ୍ ଲୋଭାସକ୍ତ ହୁଅ ନାହିଁ। ସବୁକିଛି ଈଶ୍ୱରଙ୍କ ସୃଷ୍ଟି ଏବଂ ସବୁକିଛି ତାଙ୍କର। ତେଣୁ ଆମେ ବାସନାସିକ୍ତ ହେବା ନାହିଁ ଏବଂ ଈଶ୍ୱରଙ୍କ ସଂପଦ ଉପରେ ଲୋଭ ରଖିବା ନାହିଁ। ଆମର ସ୍ୱାର୍ଥାନ୍ୱେଷୀ ଉପଭୋଗପାଇଁ ମନ ବଳାଇବା ନାହିଁ। ଆମେ ବି ଈଶ୍ୱରଙ୍କର। ତେଣୁ ଆମପାଇଁ ଯାହା ଆବଶ୍ୟକ ଈଶ୍ୱର ଆମକୁ ପ୍ରଦାନ କରିବେ ଓ ପ୍ରତିମୁହୂର୍ତ୍ତରେ ପ୍ରଦାନ କରି ଚାଲିଛନ୍ତି। ଈଶ୍ୱରଙ୍କ ସଂପଦକୁ ଆମେ ଯଦି ଅକ୍ତିଆର କରିବାକୁ ମନ ବଳାଇବା ତେବେ ତାହା ସାଧାରଣ ନୈତିକ ଜୀବନ ଦୃଷ୍ଟିରୁ ଅନୈତିକ। ଆମ ମନ କେବଳ ଈଶ୍ୱରଙ୍କ ଆଡ଼କୁ ଗତିକରୁ ଏବଂ ଉନ୍ମୁକ୍ତ ରହୁ। ଯାହାସବୁ ଆମପାଇଁ ପ୍ରାପ୍ୟ,



ତାହା ଆପେଆପେ ମିଳିଯିବ। ଯେତେବେଳେ ଆମ ମାନବ ଦୃଷ୍ଟିର ଉତ୍ତରଣ ଘଟିବ, ତାହା ଈଶ୍ୱର ଦୃଷ୍ଟିରେ ପରିଣତ ହୋଇଯିବ। ସେତେବେଳେ ମୋର ସଂପଦ ବୋଲି କିଛି ଅନୁଭବ ହେବ ନାହିଁ। ସମଗ୍ର ସୃଷ୍ଟି ନିଜର ବୋଲି ଅନୁଭବ ହେବ। ଲୋଭାସକ୍ତ ହୋଇ କୌଣସି ପାର୍ଥିବ ଉପଭୋଗ୍ୟକୁ ଟାଣି ନେବାକୁ ମନ ବଳିବ ନାହିଁ। ଏଭଳି ଅନୁଭବଟିଏ ଆସିବ, "ଈଶ୍ୱର ମହାରାଜା, ମୁଁ ତାଙ୍କର ରାଜପୁତ୍ର"। ଯୋଗ୍ୟ ରାଜପୁତ୍ର କ'ଣ ପିତାଙ୍କ ରାଜକୋଷରୁ ଚୋରି କରିବ ? ମହାରାଜାଙ୍କ ରାଜକୋଷ ତ ଭାବୀ ମହାରାଜ (ଆଜିର ରାଜପୁତ୍ର)ଙ୍କର ରାଜକୋଷ।

ଈଶ୍ୱର ସର୍ବମୟ ଚେତନା। ସେ ଅଣୁ ପରମାଣୁ ଆଦି ସୂକ୍ଷ୍ମାତି ସୂକ୍ଷ୍ମ ସ୍ଥିତିରେ ସ୍ୱୟଂ ବିଦ୍ୟମାନ। ସେ ଆମ ରକ୍ତ ପ୍ରବାହରେ, ନିଃଶ୍ୱାସ ପ୍ରଶ୍ୱାସରେ କୋଷ କୋଷାଣୁର ଜୀବନୀ ପ୍ରକ୍ରିୟାରେ ଅହରହ ଚଳପ୍ରଚଳ ହେଉଛନ୍ତି, ସ୍ନାୟୁତନ୍ତ୍ରୀରେ ତରଙ୍ଗାୟିତ ହେଉଛନ୍ତି। ଈଶ୍ୱରଙ୍କୁ ଛାଡ଼ି ଆମର କୌଣସି ଅସ୍ତିତ୍ୱ ନାହିଁ। ସାଗର ଜଳରେ ଲବଣର ଅସ୍ତିତ୍ୱ ନଥିଲେ, ସାଗର ଜଳ ସାଧାରଣ ଜଳ ହୋଇ ରହିବ। ଈଶ୍ୱର ଲବଣ ସଦୃଶ ଏ ସମସ୍ତ ସ୍ଥିତିମାନ ଓ ଅସ୍ଥିତିମାନ ଜଗତ ସକଳରେ ଜଡ଼ିତ ହୋଇ ରହିଛନ୍ତି। ସଂସାରକୁ ଏପରି ଭାବରେ ଅନୁଭବ କରି ପାରିଲେ ପରମାନନ୍ଦ ପ୍ରାପ୍ତି ହେବ।

× × × ×

ଆଜି ମୋତେ ଏକ ଅନ୍‌ଲାଇନ୍ ଆଲୋଚନାଚକ୍ରରେ ଯୋଗଦେବାର ସୁଯୋଗ ମିଳିଥିଲା। ଏଥିପାଇଁ ଅନନ୍ତ ଭାଇ (ପ୍ରଫେସର ଅନନ୍ତ ଗିରି) ମୋତେ ମନେପକାଇ ଦେଇଥିଲେ। ପ୍ରଫେସର ଓରି (Prof. Ori Z.Soltes - Georgetown University USA) ଆଲୋଚନାର ମୁଖ୍ୟ କର୍ଣ୍ଣଧାର ଥିଲେ। ମଣିଷ କିପରି କେତେଗୁଡ଼ିଏ ବିଶ୍ୱାସକୁ ଆଶ୍ରୟ କରି ଅନ୍ଧ ଭାବରେ ନିଜଗୋଷ୍ଠୀକୁ ବାନ୍ଧି ପକାଏ, ତାହା ହିଁ ଏ ଆଲୋଚନାରେ ମୋର ଦୃଷ୍ଟି

ଆକର୍ଷଣ କଲା । ସ୍ଥାନ, କାଳ, ପାତ୍ର ଅନୁସାରେ ମଣିଷର 'ଗୋଷ୍ଠୀଗତ ଈଶ୍ୱର ବିଶ୍ୱାସରୁ' ଧର୍ମମାନଙ୍କର ସୃଷ୍ଟି । ଧର୍ମରୁ ସୃଷ୍ଟି ହୁଏ ଜାତି ତଥା ରାଷ୍ଟ୍ରର ଧର୍ମ । ସ୍ଥାନୀୟ ଧର୍ମବିଶ୍ୱାସକୁ ହାତ ବାରିସି କରି ଶାସନ କ୍ଷମତାଲାଳସୀମାନେ ଜାତି ତଥା ରାଷ୍ଟ୍ରର ଶାସନ କରିବାକୁ ଆଗଭର ହୁଅନ୍ତି । ତାଙ୍କ ଭିତରେ ଅହଂଗତ ଲାଳସା ପ୍ରବଳ ମାତ୍ରାରେ ଥାଏ । ସେମାନେ ନିଜ ଇଚ୍ଛା ଅନୁସାରେ ଶାସନର ବାଡ଼ି ବୁଲାଇବାରେ ଲାଗିପଡ଼ନ୍ତି । ଏହାଦ୍ୱାରା ଜଗତର ମହତ୍ତ୍ୱପୂର୍ଣ୍ଣ ସୃଷ୍ଟିର ଉଦ୍ଦେଶ୍ୟଟି ପଛକୁ ଠେଲି ହୋଇଯାଏ । ଏକ ଜାତି ତଥା ଦେଶର ଅସଲ ପ୍ରଗତି ବାଟବଣା ହେବାରେ ଲାଗେ ।

ମୋ' ଭିତରେ ଏହିଭଳି ଅନୁଭବଟି ଲାଗିରହିଲା । ମୁଁ ତାହାକୁ ଇଂରାଜୀରେ କବିତା ଆକାରରେ ଲେଖି ବସିଲି ଏବଂ ଅନେକ ପାଠକଙ୍କ ପାଖକୁ ପଠାଇଲି । ବହୁତ ଉତ୍ତମ ମନ୍ତବ୍ୟ ଆସିଲା । ତା'ପରେ ସେଇ କବିତାଟିର ମର୍ମାର୍ଥ ଓଡ଼ିଆରେ ଲେଖିବାକୁ ଇଚ୍ଛାକଲି । ଆଲୋଚନାବେଳେ ମୋ' ମନ ଈଶୋପନିଷଦର ପ୍ରଥମ ମନ୍ତ୍ର ଉପରେ ଜାଗ୍ରତ ରହିଥିଲା । ତେଣୁ ତାହାର ପ୍ରଭାବକୁ ମୁଁ ଏଠାରେ ଏଡ଼ାଇ ପାରି ନାହିଁ ।

କବିତାର ମର୍ମାର୍ଥ ଏହିପରି –

**"କଇଞ୍ଚି ନୁହେଁ ଛୁଞ୍ଚି ଦରକାର"**

ହେ ଈଶ୍ୱର, ମୁଁ କଇଞ୍ଚିର ବ୍ୟବହାର ଜାଣିନି । ତୁମେ ଦେଇଥିବା କଇଞ୍ଚିଟିକୁ ତୁମ ବିଶାଳ ଗନ୍ତାଘରକୁ ଫେରାଇ ଦେବି । ମୋ' ଠାରୁ କଇଞ୍ଚିଟି ନେଇଯାଅ, ମୋତେ ଦୟାକରି ଛୁଞ୍ଚି ଓ ସୂତା ଦିଅ ।

ମୋତେ ପରିଷ୍କାର ଭାବରେ ଦେଖାଯାଉଛି, ଏକ ଧ୍ୱଂସକ୍ରିୟା ଲାଗି ରହିଛି । ମାତ୍ର ତାହା ବେଶି ଦିନ ତିଷ୍ଠିବ ନାହିଁ । ଜଣାପଡୁଛି, ଲୁଗାଟିକୁ ସତେଯେପରି କିଏ ଚିରି ପକାଉଛି । କିନ୍ତୁ ମୋର ଦୃଢ ପ୍ରତ୍ୟୟ ଯେ



ଏସବୁ ଛିଣ୍ଡା ଲୁଗାକୁ ମୁଁ ଛୁଞ୍ଚି ସୂତା ସାହାଯ୍ୟରେ ବଢିଆ ଭାବରେ ଯୋଡ଼ି ଦେଇ ପାରିବି।

ମୁଁ କାହିଁକି କଇଞ୍ଚି ଧରି କାଟିବି ଓ ଫୋପାଡ଼ିବି! ମୁଁ ମୋ'ର ମାନବିକତାର ବୁଦ୍ଧି ଓ କଳା କୌଶଳକୁ ପ୍ରୟୋଗ କରି ନୂତନ ଭାବରେ ସର୍ଜନା କରିବି। ଗୋଷ୍ଠୀଗତ ଜୀବନ ଯାତ୍ରା କଲାବେଳେ ଅଦୃଶ୍ୟ ଶକ୍ତି, ଦେବଦେବୀ, ଈଶ୍ୱର ସମ୍ବନ୍ଧୀୟ କେତେକ ଦୃଢ଼ ବିଶ୍ୱାସ ଗୋଷ୍ଠୀଗତ ମନରେ ସ୍ଥାପିତ ହୋଇଯାଏ। ସେଥିରୁ ଉତ୍ପନ୍ନ ହୁଏ ଧର୍ମ। ଧର୍ମକୁ ନେଇ ଜାତି ଜାତି, ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ସୀମାରେଖା ଟଣା ହୋଇଯାଏ। ଅହଂକାରୀ ଶକ୍ତିମାନେ ଧର୍ମର ଦ୍ୱାହି ଦେଇ ସମାଜର ପରିବେଶକୁ ସେମାନଙ୍କ ବଳଶାଳୀ ମାଂସପେଶୀର କବ୍‌ଜାରେ ରଖି ଦିଅନ୍ତି। ଈଶ୍ୱରଙ୍କ ଜଗତଟି ସେମାନଙ୍କ ଅକ୍ତିଆରରେ ରହିଯାଏ। ଈଶ୍ୱରଙ୍କ ସୃଷ୍ଟିର ମଣିଷମାନଙ୍କୁ ସୁରକ୍ଷା ଦେଇ ହୁଏ ନାହିଁ। କଇଞ୍ଚି ଘୂରି ଘୂରି କର୍ତ୍ତନ କରିଚାଲେ।

ମୁଁ ସୁଉଚ୍ଚ ସ୍ଥାନକୁ ଉଠିଯାଇ ନୀରବରେ ବସିଲି। ମୋତେ ସବୁକିଛି କିମ୍ଭୁତକିମ୍ଭାକାର ମନେହେଲା। ସେଇଠି ଈଶ୍ୱର ମୁରୁକି ହସୁଥିଲେ। ତାଙ୍କ ହସ ଦେଖି ମୁଁ ଅଧିକ ବିବ୍ରତ ହୋଇପଡ଼ିଲି। ଈଶ୍ୱର ଫୁସ୍‌ଫୁସ୍ କରି କାନରେ କହିଲେ –

'ମୁଁ ଅଳ୍ପ କେତେଜଣଙ୍କୁ ଅପେକ୍ଷା କରିଥିଲି, ଯେଉଁମାନେ କଇଞ୍ଚି ଫେରାଇଦେବେ। ମୁଁ ସେମାନଙ୍କୁ ଛୁଞ୍ଚିସୂତା ଦେବି। ସେମାନେ ମୋ' ପାର୍ଥିବ ବାସଭୂମିଟିକୁ ମରାମତି କରି ସଜାଡ଼ି ଦେବେ। ମୋ' ଅସଲ ସୃଷ୍ଟିର ମହତ୍ତ୍ୱ ମଧ୍ୟରେ ବିବିଧତା ବଜାୟ ରହିବ। ବହୁ ସମୟ ବିତି ଯାଇଥିଲେ ବି ଏହାକୁ ହୃଦୟଙ୍ଗମ କରିବାଦ୍ୱାରା ଚିର ନବ ସୃଜନର ଜଗତଟି ଗଢ଼ା ଯାଇ ପାରିବ।'

× × × ×



ଈଶୋପନିଷଦର ପ୍ରଥମ ମନ୍ତ୍ରର ଆଲୋଚନା ଶେଷ ହେଲାପରେ ଗୋଟିଏ ମିନିଟ୍ ନୀରବତା ପରେ ସକାଳର ସ୍ୱାଧ୍ୟାୟ ପର୍ବ ସମାପ୍ତ ହେଲା। ଆଜି ମଧ୍ୟାହ୍ନ ଭୋଜନରେ ଥିଲା ଉଷୁନା ଭାତ ଡାଲି ଓ ଶାଗ। ପିଆଜ, ଲଙ୍କା, ତେନ୍ତୁଳି, ଆମ୍ବୁଲ ଆଦି ଗଚ୍ଛିତ ହୋଇ ରହିଥିଲା। ଯାହାର ଦରକାର; ସେ ଅକ୍ଳେଶରେ ସେସବୁକୁ ଆଣି ଜିହ୍ୱା ସ୍ୱାଦର ଅଭିବୃଦ୍ଧି କରିପାରୁଥିଲା। ଦ୍ୱିପ୍ରହରେ ଟିକିଏ ଗଡ଼ପଡ଼ ହୋଇ ଉପର ଓଳିର ସ୍ୱାଧ୍ୟାୟପାଇଁ ଅଗଣାରେ ଚିତ୍ତଭାଇଙ୍କୁ ଘେରି ବସି ପଡ଼ିଲୁ। ଶୀତ ଛାଡ଼ି ଯାଇଥିଲା, ତେଣୁ ଖରାଜାଗା ଖୋଜି ବସିବାର ଆବଶ୍ୟକତା ପଡ଼ିଲା ନାହିଁ।

× × × ×

ଦ୍ୱିତୀୟ ମନ୍ତ୍ରଟିକୁ ଚିତ୍ତଭାଇ ଆବୃତ୍ତି କଲେ। ଆମେ ପାଳିଧରି ଆବୃତ୍ତି କଲୁ। ମନ୍ତ୍ରଟିର ଅର୍ଥ ବୁଝିବା ସହ ଆଲୋଚନା କରାଗଲା।

ଗୁରୁଙ୍କ ପାଖରେ ଉପବେଶନ କରି ଗଭୀର ମନନ ସହ ଜ୍ଞାନ ଆହରଣ କରିବାର ମୌଳିକ ପ୍ରକ୍ରିୟାଟିରେ ଆମେ ସାମିଲ ହୋଇ ରହିଥିଲୁ। ଏହାଦ୍ୱାରା ଉପନିଷଦୀୟ ଯୁଗର ପାରମ୍ପରିକ ପରିବେଶଟିକୁ ଆମେ ଏହି ସ୍ୱାଧ୍ୟାୟ ମାଧ୍ୟମରେ ଅନୁଭବ କରୁଥିଲୁ।

ଦ୍ୱିତୀୟ ମନ୍ତ୍ର -

**କୁର୍ବନ୍ନେବେହ କର୍ମାଣି ଜିଜୀବିଷେଚ୍ଛତଂ ସମାଃ।**<br>
**ଏବଂ ତ୍ୱୟି ନାନ୍ୟଥେତୋଽସ୍ତି ନ କର୍ମ ଲିପ୍ୟତେ ନରେ॥**

ସହଜ ଭାବରେ ମୁଁ ମନ୍ତ୍ରଟିକୁ ନିମ୍ନମତେ ବୁଝିଲି। ଆଧ୍ୟାତ୍ମିକ ପଥରେ ଯାତ୍ରା କରିବାକୁ ଅଭୀପ୍ସା କରୁଥିବା ପ୍ରତ୍ୟେକ ବ୍ୟକ୍ତି କର୍ମରେ ଆସକ୍ତି ନରଖି କାମ କରୁକରୁ ଶହେ ବର୍ଷ ଜୀବନଧାରଣ କରିବାର ଇଚ୍ଛା ପୋଷଣ କରିବା ଆବଶ୍ୟକ।

ବଡ଼କଥା ହେଲା ଜଣେ ସୁସ୍ଥ ଶରୀର ଧରି ଖୁସିରେ ତଥା କାର୍ଯ୍ୟକ୍ଷମ ଅବସ୍ଥାରେ ଶହେ ବର୍ଷ ବଞ୍ଚିବ ବୋଲି ଆଶା ପୋଷଣ କରିବ। ପ୍ରକୃତରେ ମନରେ ଏହା ବଡ଼ ଭରସା ଯୋଗାଇ ଦେଉଛି। ଏହା ଉପରେ ଅନୁଚିନ୍ତନ କଲେ ନିଜ ଭିତରେ ଅନେକ ଶକ୍ତି ସଞ୍ଚାର ହେଉଛି। ଏ ବିଷୟରେ ପରବର୍ତ୍ତୀ ପୃଷ୍ଠାରେ ଆଲୋଚନା କରାଯାଇଛି।

ଅପରାହ୍ନର ସ୍ୱାଧ୍ୟାୟ ପରେ ଆମେ ପୋଖରୀ ଖୋଳା କାମକୁ ବାହାରି ପଡିଲୁ। ଏଠାରେ ଭଲି ଖେଳପାଇଁ ଆମେ ବ୍ୟବସ୍ଥା କରି ପାରିନଥିଲୁ। ତାଛଡ଼ା ଚିତ୍ତଭାଇଙ୍କୁ ଜରଜର ଲାଗୁଥିଲା। ତେଣୁ ଖେଳଆଡକୁ ମନ ଉଚ୍ଛନ୍ନ ହେଉ ନଥିଲା। ମୁଢ଼ି ସାଙ୍ଗରେ ଚାହାପାନର ବ୍ୟବସ୍ଥା ଶୀତ ପଡ଼ିଆସୁଥିବା ସନ୍ଧ୍ୟାଟିକୁ ପୁଲକିତ କରିଦେଲା। କିଛି ସମୟ ଆମେ ବିନିନ୍ଦାର ଭାଇମାନଙ୍କ ସହ ମିଶି ରାତିରେ ଶୀତରୁ ରକ୍ଷା ପାଇବାପାଇଁ ମାଟିକାନ୍ଥରେ ତିଆରି ବଖରାଗୁଡ଼ିକର ମେଲା ଓଳି ଜାଗାରେ ନଡ଼ା ବେଢ଼ାଇବାର ବ୍ୟବସ୍ଥା କଲୁ। ମାଟି ଚଟାଣ ଉପରେ ନଡ଼ା ବିଛାଇଲୁ। ବଖରାଗୁଡ଼ିକୁ ଉଷ୍ଣମ ରଖିବାପାଇଁ ମାଟି ପଲମରେ ନିଆଁ ଜଳାଇବା ପାଇଁ ବ୍ୟବସ୍ଥା କଲୁ।

ତା'ପରେ ସାନ୍ଧ୍ୟ ବୈଠକ। ଆଜି ପ୍ରଥମ ସନ୍ଧ୍ୟା। ତେଣୁ ପରସ୍ପର ସହ ଭଲ ଭାବରେ ପରିଚୟ ହେବା କଥା। ବାହାରର ଶିବିରାର୍ଥୀ ଓ ବିନିନ୍ଦା ବନ୍ଧୁମାନଙ୍କର ଅନ୍ତରଙ୍ଗ ପରିଚୟ ସାନ୍ଧ୍ୟ ମହଲଟିକୁ ଉତ୍ସାହପୂର୍ଣ୍ଣ କରି ଦେଉଥିଲା। ସୁରେନ୍ଦ୍ର ଭାଇ (ବାବା) ଶଙ୍କି ଯାଉଥିବା ଭାଇମାନଙ୍କୁ ମଜା କଥା କହି ଚେଙ୍ଗାଇ ଦେଉଥିଲେ। ଜଣେ ଦୁଇଜଣ ପ୍ରାର୍ଥନାର ସୁରରେ ସାନ୍ଧ୍ୟ ପରିବେଶଟିକୁ ଉଲ୍ଲସିତ କରିଦେଲେ। କାଲିପାଇଁ ଖଞ୍ଜଣି, ଗିନି ଆଦି ପହଞ୍ଚିବ ବୋଲି ଖବର ମିଳିଗଲା। ଆଗାମୀ କାଲିର କାର୍ଯ୍ୟସୂଚୀ ରାମଭାଇ ଓ ଅଜୟ ଭାଇ ସମସ୍ତଙ୍କୁ ଜଣାଇଦେଲେ। ନୀରବ ପ୍ରାର୍ଥନା ସହ ସାନ୍ଧ୍ୟ କାର୍ଯ୍ୟକ୍ରମ ସମାପ୍ତ ହେଲା। ତା'ପରେ ରାତ୍ର ଭୋଜନ ଓ ଶୟନ ପର୍ବ। ନିଶା ଗର୍ଜ୍ଜନର ଆଭାସ ମିଳିଗଲାଣି। ବଣୁଆ ଜୀବଙ୍କର କଳରବ ଶୁଭିଲାଣି।

ମଣିଷ ଶତାୟୁ ହେବ ଏବଂ ଆସକ୍ତି ରହିତ ହୋଇ କାର୍ଯ୍ୟକ୍ଷମ ଅବସ୍ଥାରେ ଶହେ ବର୍ଷ ଜୀବନ ଧାରଣ କରିବ - ଆଜି ସକାଳେ ଲେଖିଲାବେଳେ ଏଭଳି କଥାଟି ଉପରେ ମୋ' ମନ ଘୂରି ବୁଲିଲା। କାରଣ ଅଞ୍ଜଳି ଅପା ଗତକାଲି ମୋ' ଲେଖାଟି ପଢ଼ି ପ୍ରଶ୍ନଟିଏ ପଠାଇଥିଲେ ଯାହା ମୋ ଭାବନାରେ ଖିଅ ଧରାଇ ଦେଲା।

ଅଞ୍ଜଳି ଅପାଙ୍କ ପ୍ରଶ୍ନଟିଏ ଏପରି ଥିଲା।

ହିମାଳୟର ବରଫ ପୃଷ୍ଠ ଉପରେ ସାଧୁ ସନ୍ନ୍ୟାସୀମାନେ କୁଆଡ଼େ ୪୦୦-୫୦୦ ବର୍ଷ ଧରି ଜୀବନ ଧାରଣ କରିଥାନ୍ତି - ଏକଥାକୁ ଆମେ ବିଶ୍ୱାସ କରିବା ନା ଗୁଜବ କହିବା ?

ପ୍ରଶ୍ନଟିର ଉତ୍ତର ମୁଁ ନିମ୍ନମତେ ପ୍ରଦାନ କଲି।

ମୁଁ ହିମାଳୟର ବରଫ ପୃଷ୍ଠକୁ ଯାଇ ସେଭଳି ସାଧୁ ସନ୍ନ୍ୟାସୀମାନଙ୍କୁ ଦେଖିନାହିଁ, ମାତ୍ର ମୁଁ ଏକଥାକୁ ଅମୂଳକ କହି ଉଡ଼ାଇ ଦେଇ ପାରିବି ନାହିଁ। ଅର୍ଥାତ୍ ମୁଁ ଏ କଥାଟିକୁ ଏକ ପ୍ରକାରେ ବିଶ୍ୱାସ କରୁଛି । ବରଫର ମାଇନସ୍ ତାପମାତ୍ରାରେ ଶରୀରର ବିଘଟନ ପ୍ରକ୍ରିୟା ଓ ଶକ୍ତି କ୍ଷୟ ବହୁତ କମ୍ ହେବ। ଫ୍ରିଜ୍‌ରେ ପନିପରିବା ସତେଜ ରହିଲା ପରି ବରଫ ଭିତରେ ଶରୀର ସତେଜ ରହିବ। ପ୍ରଥମେ ସାଧୁମାନେ କମ୍ ଥଣ୍ଡା ଜାଗାରେ ଶରୀରକୁ ଅଭ୍ୟସ୍ତ କରାଉଥିବେ ଏବଂ ପରେ ଅଧିକରୁ ଅଧିକ ଥଣ୍ଡା ଜାଗାକୁ ଯାଉଥିବେ। ଶରୀର ଥଣ୍ଡା ତାପମାତ୍ରା ସହ କୋଷସ୍ତର ପର୍ଯ୍ୟନ୍ତ ସନ୍ତୁଳିତ ହେଉଥିବ। ସାଧାରଣ ମଣିଷପାଇଁ ଯେଉଁ ଥଣ୍ଡାରେ ଜୀବନ ହାନି ହୋଇଯିବ, ସାଧୁମାନଙ୍କପାଇଁ ଏହି ଥଣ୍ଡା କ୍ରମେ ସ୍ୱାଭାବିକ ହୋଇ ଯାଉଥିବ। ତା'ଛଡ଼ା ସାଧୁ ସନ୍ନ୍ୟାସୀମାନେ ନାନା ପ୍ରକାର ଶରୀର ଚର୍ଚ୍ଚା ଓ ଯୋଗ ସାଧନା କରୁଥିବେ, ଯାହାକି ସେମାନଙ୍କ ମସ୍ତିଷ୍କ ଓ ସ୍ନାୟୁତନ୍ତ୍ରୀକୁ ସଦା ଉଜ୍ଜୀବିତ କରି ରଖୁଥିବ। ପୁନଶ୍ଚ ସେମାନଙ୍କ ମନ ଦୁଶ୍ଚିନ୍ତା ମୁକ୍ତ ହୋଇ

ଏକ ପ୍ରଶାନ୍ତି ଅବସ୍ଥା ଅନୁଭବ କରୁଥିବେ ଏବଂ ସଦାସର୍ବଦା ସ୍ଫୁର୍ତ୍ତି ରହୁଥିବେ। ଏପରି ଶରୀରପାଇଁ ସାଧାରଣ ବ୍ୟକ୍ତିର ଶରୀର ପରି ଖାଦ୍ୟର ଆବଶ୍ୟକତା ନଥିବ, କାରଣ ଶରୀରରୁ ଶକ୍ତି କ୍ଷୟ ଖୁବ୍ କମ୍ ମାତ୍ରାରେ ହୋଇଥିବ। ଏତଦ୍ ବ୍ୟତୀତ ଯୋଗଶକ୍ତି ବଳରେ ବିଶ୍ୱର ସୂକ୍ଷ୍ମ ଚେତନାରୁ ଏହି ସାଧୁ ସନ୍ନ୍ୟାସୀମାନେ ଶକ୍ତି ଆହରଣ କରୁଥିବେ। ଏସବୁ ସେମାନଙ୍କ ଆୟୁଷକୁ ବହୁଗୁଣିତ କରିବାରେ ନିଶ୍ଚିତ ଭାବରେ ସହାୟକ ହେଉଥିବ।

ମୋ'ମନରେ ଆଉ ଏକ ପ୍ରଶ୍ନ ଉଦ୍ରେକ ହେଲା। ମଣିଷ ଯଦି ସ୍ୱାଭାବିକ ଭାବରେ ଶତାୟୁ ହୋଇପାରିବ, ତେବେ କାହିଁକି ଦୁଇଶହ ବା ହଜାରେ ବା ଆହୁରି ଅଧିକ ବର୍ଷ ବଞ୍ଚି ନପାରିବ ! ଯଦି ଏହା ସମ୍ଭବ ହେବ, ତେବେ କାହିଁକି ଶରୀର ଅମର ନହେବ ବା ଜଣେ ଯେତେବେଳେ ଇଚ୍ଛା କରିବ ସେତେବେଳେ ମୃତ୍ୟୁବରଣ ନକରିବ ! ଏଭଳି କଥାଟିକୁ ଯଦି ଆଲୋଚନା ପରିସରକୁ ଅଣାଯାଏ, ତେବେ ସମସ୍ତେ ହସି କରି କହିବେ, "ମର୍ତ୍ତ୍ୟ ମଣ୍ଡଳେ ଦେହ ବହି, ଦେବତା ହୋଇଲେ ମରଇ"। ଏ ବିଷୟରେ "ଜନ୍ମ ଅଜନ୍ମ" ସଂକ୍ରାନ୍ତରେ ଆଲୋଚନା କଲାବେଳେ ଆଉ ଟିକିଏ ବିସ୍ତୃତ ଭାବରେ ବିଚାର କରିବା।

× × × ×

## ଜନ୍ମ ଓ ଅଜନ୍ମ

ଜନ୍ମ ଓ ମୃତ୍ୟୁ ଏ ଦୁଇଟି ସତ୍ୟ ଆମ ସମ୍ମୁଖରେ ଦଣ୍ଡାୟମାନ। ଧରାପୃଷ୍ଠରେ ଜନ୍ମ ନେଲେ ମୃତ୍ୟୁର ଦ୍ୱାର ପାଖରେ ଉପନୀତ ହେବାକୁ ପଡ଼ିବ। ଜନ୍ମ ପୂର୍ବରୁ ମାତୃଗର୍ଭରେ ଭ୍ରୂଣଟି ବଢୁଥିବାବେଳେ ବିନଷ୍ଟ ହୋଇଯିବାର ସମ୍ଭାବନା ଥାଏ। ଭ୍ରୂଣର ଆଦ୍ୟ ଅବସ୍ଥାରେ ଗର୍ଭପାତ ହୋଇପାରେ ଏବଂ ଗର୍ଭରେ ଭ୍ରୂଣଟିର ପୂର୍ଣ୍ଣତା ପ୍ରାପ୍ତି ହେଲାପରେ ଗର୍ଭଜନିତ

ସମସ୍ୟା ଯୋଗୁଁ ବିନଷ୍ଟ ହୋଇଯାଇପାରେ। ତେଣୁ ଆମେ କହିପାରିବା ଯେ ପ୍ରାଣ ସଂଚାର ହେବାଠାରୁ ଆରମ୍ଭ କରି ପୂର୍ଣ୍ଣପ୍ରାପ୍ତ ଶରୀର ଧାରଣ କରିଥିବା ମଣିଷର ମୃତ୍ୟୁ ସୁନିଶ୍ଚିତ। ମଣିଷ ସମେତ କୌଣସି ଜୀବର ଶରୀର ଅକ୍ଷୟ ବା ଅମର ନୁହେଁ। ମୋଟାମୋଟି ଭାବରେ ଜନ୍ମ ମୃତ୍ୟୁ ଏକ ସ୍ୱାଭାବିକ ଘଟଣା। ଏହି ସ୍ୱାଭାବିକ ଘଟଣାକୁ ଇତର ଜୀବମାନେ କିପରି ଗ୍ରହଣ କରିଛନ୍ତି, ସେ ବିଷୟରେ ଆମେ ବିଶେଷ କିଛି କହିପାରିବା ନାହିଁ। ମାତ୍ର ମଣିଷ ଜନ୍ମ ମୃତ୍ୟୁର ସତ୍ୟଟିକୁ ଭଲଭାବରେ ବୁଝିଥିଲେ ମଧ୍ୟ ଏହାକୁ ସ୍ୱାଭାବିକ ଘଟଣା ବୋଲି ସ୍ୱୀକାର କରୁଥିଲେ ବି ନିଜର ମୃତ୍ୟୁ କେତେବେଳେ ହୋଇଯିବ ବୋଲି ବିଶ୍ୱାସ କରେନାହିଁ। ସର୍ବଦା ମନ ଭିତରେ ଏକ ଝୁଙ୍କ ଥାଏ, ମୁଁ ଏତେ ବର୍ଷ ବଞ୍ଚି ଜୀବନକୁ ଉପଭୋଗ କରିବି । ଏହା ଏକ ପ୍ରକାର ଅମରତ୍ୱର ଆକାଙ୍କ୍ଷା ବୋଲି ବୁଝିବାକୁ ହେବ। ଜୀବନକୁ ପୂରା ଉପଭୋଗ କଲାପରେ ମୃତ୍ୟୁ ଆସିଲେ ବାଧେ ନାହିଁ। ଜୀବନ ବଞ୍ଚିବାରେ ବିରକ୍ତି ଆସିଲେ ଜଣେ ଆତ୍ମହତ୍ୟା କରିବାପାଇଁ ବି ଉଦ୍ୟତ ହୋଇପାରେ। ମାତ୍ର ଏପରି ଘଟଣା ଖୁବ୍ କମ୍। ଅଧିକ ବର୍ଷ ବଞ୍ଚିବି ଏବଂ ଜୀବନକୁ ପୂରା ଉପଭୋଗ କରିବି”- ଏହା ସଂଖ୍ୟାଧିକ ମଣିଷଙ୍କର ଇଚ୍ଛା। ମଣିଷକୁ ଯଦି କିଏ ଦୃଢ଼ ଭରସା ଦେବ ଯେ ତୁମେ କେବେ ମରିବ ନାହିଁ, ତେବେ ମଣିଷ ସଙ୍ଗେସଙ୍ଗେ ଏହାକୁ ଗ୍ରହଣ କରିବାକୁ ଆଗଭର ହୋଇଯିବ। ମଣିଷ ଯେତିକି ବର୍ଷ ବଞ୍ଚି ପାରୁଛି, ତାଠାରୁ ଯଥେଷ୍ଟ ଅଧିକ ବର୍ଷ ବଞ୍ଚି ପାରିବାର ଆଶା ଉଦ୍ରେକ ହେବାରେ ଲାଗିଛି।

ଆମ ଶରୀର ଯେଉଁ ଭୌତିକ ଉପାଦାନରେ ଗଢା ସେସବୁକୁ ଗୋଟି ଗୋଟି କରି ଗଣି ଚିହ୍ନଟ କରିବା କାଠିକର ପାଠ। ସବୁ ଉପାଦାନଗୁଡ଼ିକୁ ପଞ୍ଚଭୂତରେ ଭାଗ କରାଯାଇଛି, ଯଥା, କ୍ଷିତି, ଅପ୍, ତେଜ, ମରୁତ୍ ଓ



ବ୍ୟୋମ (ମାଟି, ପାଣି, ଅଗ୍ନି, ପବନ ଓ ଆକାଶ)। ଶରୀର ଯେତେବେଳେ ମୃତ୍ୟୁବରଣ କରେ ଏସବୁ ପଞ୍ଚଭୂତ ଅଲଗା ଅଲଗା ହୋଇ ନିଜନିଜର ମୂଳ ଉତ୍ସରେ ବିଲୀନ ହୋଇଯାନ୍ତି। ମାଟି ମାଟିରେ ମିଶିଯାଏ, ଜଳ ଜଳରେ ମିଶିଯାଏ (ଶରୀରରେ ୧୦୦ ରୁ ୭୦ ଭାଗ ରହିଛି ଜଳ), ଅଗ୍ନି ଅଗ୍ନିରେ ମିଶିଯାଏ, ବାୟୁ ବାୟୁମଣ୍ଡଳରେ ମିଶିଯାଏ ଏବଂ ଆକାଶ ଆକାଶରେ ଲୀନ ହୋଇଯାଏ।

ଆମ ଶରୀର ଯେତେବେଳେ ମାତୃଗର୍ଭରେ ଗଢ଼ା ହେଉଥାଏ, ତାହା ପିତାମାତାଙ୍କ ଶୁକ୍ରାଣୁ ଓ ଡିମ୍ବାଣୁର ମିଳନଦ୍ୱାରା ହୋଇଥିବା ଜେନେଟିକ୍ ସମ୍ମତିଦ୍ୱାରା ସଂଘଟିତ ହେଉଥାଏ। ମା'ର ଶରୀରରୁ ଖାଦ୍ୟରସର ପୋଷଣ ପାଇ ଭ୍ରୁଣ ପିଣ୍ଡୁଳାଟି ଭିତରେ ପୂର୍ବ ନିର୍ଦ୍ଦିଷ୍ଟ ଜେନେଟିକ୍ ଇଜିଂନିୟରିଂ ଡିଜାଇନ୍‌ରେ ମାତୃଗର୍ଭରେ ଶିଶୁର ଶରୀର ଗଠନ ହୋଇଥାଏ। ଏହି ଗଠନ ପ୍ରକ୍ରିୟାର ଜୈବରାସାୟନିକ ଦିଗଟିକୁ ଆମେ ଜୀବ ବିଜ୍ଞାନର ଗବେଷଣା ମାଧ୍ୟମରେ ଅନେକ ମାତ୍ରାରେ ଜାଣି ପାରିଛେ। ମାତ୍ର ଅନେକ ଗହନ କଥା ଉପରେ ଆମର ଆହୁରି ଅନେକ କିଛି ଜାଣିବାକୁ ବାକିଅଛି। ଭ୍ରୁଣଟି ମାତୃଗର୍ଭରେ ବଢ଼ି ବଢ଼ି ଶିଶୁ ଜନ୍ମ ପ୍ରକ୍ରିୟାଟି ସୁରୁଖୁରୁରେ ହୋଇଗଲେ; ପରିବାର ଲୋକେ ତଥା ଆତ୍ମୀୟ ସ୍ୱଜନ ଖୁସି ହୁଅନ୍ତି। ଆଗକୁ ସଂସାର କ୍ଷେତ୍ରରେ ଶିଶୁଟି ସୁରକ୍ଷିତ ଭାବରେ ବଢ଼ି ବଡ଼ ହେବ ଏବଂ ତା' ଅନୁସାରେ ସଂସାରକୁ ଉପଭୋଗ କରି ଜୀବନଯାତ୍ରାକୁ ଖୁସି କରାଇବ। ଶରୀରଟି ତିଆରି ହେବା ପ୍ରକ୍ରିୟାରେ ଜୀବନୀଶକ୍ତି ପରିସ୍ରବିତ ହୋଇ ରହିଥାଏ। ଜୀବନୀ ଶକ୍ତି ହେଉଛି ପ୍ରାଣମୟ କୋଷର ଶକ୍ତି। ମାନସିକ ଶକ୍ତି ନିହିତ ହୋଇ ରହିଥାଏ, ମାତ୍ର ଆଦ୍ୟ ଅବସ୍ଥାରେ ତା'ର କାମ ଆରମ୍ଭ ହୋଇ ନଥାଏ। ଏହି ଶରୀର-ପ୍ରାଣ ଓ ମନର ଅଧିଷ୍ଠାନଟି ଭିତରେ ପରମଚେତନା ବା ପରମାତ୍ମାଙ୍କ ଅଂଶ ଭାବରେ ଜୀବାତ୍ମା ଅଧିଷ୍ଠିତ

ହୋଇଥାନ୍ତି । ସେ ସମଗ୍ର ବିଶ୍ୱ ଓ ବିଶ୍ୱାତୀତ ଚେତନା ସହ ଏହି ବ୍ୟକ୍ତିଗତ ଚେତନ ସଂସ୍ଥାନଟିକୁ ଯୁକ୍ତ କରି ରଖିଥାନ୍ତି । ଏହିପରି ଭାବରେ ଆମ ଅଜାଣତରେ ଅଦୃଶ୍ୟଭାବରେ ପ୍ରତି ମଣିଷର ଖିଅଟି ମାନବ ତଥା ମାନବାତୀତ ଜଗତ ସହ ଯୋଡ଼ି ହୋଇ ରହିଥାଏ । ପ୍ରସ୍ତୁତି ଅନୁସାରେ ଏହି ଖିଅଟିରେ ଉଚ୍ଚସ୍ତରୀୟ ସ୍ପନ୍ଦନ ସୃଷ୍ଟି ହୁଏ ଏବଂ ଏହା ଉର୍ଦ୍ଧ୍ୱଚେତନାର ସ୍ତର ଆଡକୁ ଉନ୍ମୀଳିତ ହୋଇରହେ ଓ ଆଲୋକିତ ହେବାରେ ଲାଗେ ।

ଶ୍ରୀଅରବିନ୍ଦ ଚୈତ୍ୟସତ୍ତା ଉପରେ ପ୍ରାଧାନ୍ୟ ଦେଇ କହିଛନ୍ତି । ଜୀବାତ୍ମାର ପ୍ରମୁଖ ଅଂଶ ଭାଗରେ ଚୈତ୍ୟସତ୍ତା ଆମ ଭିତରେ ବିଦ୍ୟମାନ ହୋଇ ରହିଛି । ସେ ଗତିଶୀଳ ଓ ବିକାଶଶୀଳ । ଚୈତ୍ୟସତ୍ତା ଜନ୍ମ ଜନ୍ମାନ୍ତର ଅନୁଭୂତି ସକଳକୁ ସଂଗ୍ରହ କରି ପରଜନ୍ମରେ ପହଞ୍ଚାଇ ଦିଅନ୍ତି ଏବଂ ଆମର ପଥପ୍ରଦର୍ଶକ ଭାବରେ ଯଥାବିଧି ଇଙ୍ଗିତ ଦେଇଥାନ୍ତି । ମାତ୍ର ସଚେତନ ଭାବରେ ଆମେ ଚୈତ୍ୟସତ୍ତାଙ୍କ ଇଙ୍ଗିତ ଏବଂ ତାଙ୍କର ଉପସ୍ଥିତିକୁ ଜାଣିପାରୁ ନାହୁଁ । ଯେଉଁ ଶ୍ରେଷ୍ଠ ମାନବମାନେ ଚୈତ୍ୟସତ୍ତାଙ୍କର ଉପସ୍ଥିତିକୁ ଜାଣିପାରନ୍ତି ଓ ତାଙ୍କର ନିର୍ଦ୍ଦେଶକୁ ବୁଝିପାରି ଜୀବନଯାତ୍ରା କରିଥାଆନ୍ତି, ସେମାନେ ଅତ୍ୟନ୍ତ ନିଆରା । ଯୋଗପଥରେ ସେମାନଙ୍କର ଅଗ୍ରଗତି ଦ୍ରୁତ ଗତିରେ ହୋଇଥାଏ । ସେମାନଙ୍କ ଜୀବନର ଯାତ୍ରାପଥ ସୂର୍ଯ୍ୟଦୀପ୍ତ ହୋଇଥାଏ ।

ଶ୍ରୀମା ସରଳଭାବରେ ଚୈତ୍ୟସତ୍ତା ସମ୍ପର୍କରେ ଉଦାହରଣ ଦେଇ ବୁଝାଇ କହିଛନ୍ତି; ଚୈତ୍ୟସତ୍ତା ବିଦ୍ୟୁତ୍ ସଂଯୋଗକାରୀ ତାର ପରି । ଏହି ତାର ବିଦ୍ୟୁତ୍ ପ୍ରବାହର ମୂଳଉତ୍ସ ସହ ବିଜୁଳି ବଲ୍‌ବ (ଆଲୋକବତୀ)କୁ ସଂଯୋଗ କରିଥାଏ । ସୁଇଚ୍ ଟିପିଲା ମାତ୍ରକେ ବିଦ୍ୟୁତ୍ ଶକ୍ତି ବିଦ୍ୟୁତ୍ ତାର ମଧ୍ୟ ଦେଇ ବଲ୍‌ବ ଭିତରର ଫିଲାମେଣ୍ଟରେ ପ୍ରବାହିତ ହୋଇ ଆଲୋକ ସୃଷ୍ଟି କରେ । ସେହିପରି ଚୈତ୍ୟସତ୍ତା ପରମେଶ୍ୱର ବା ସଚ୍ଚିଦାନନ୍ଦଙ୍କ ଚେତନା



ସହ ଆମ ମନ ପ୍ରାଣ ଶରୀରର ଅଧିଷ୍ଠାନକୁ ସଂଯୋଗ କରିଥାନ୍ତି ଏବଂ ପରମେଶ୍ୱରଙ୍କ ତରଙ୍ଗ ଆମ ଭିତରେ ପ୍ରବାହ କରୁଥାନ୍ତି। ଆମେ ଯେତେଯେତେ ପ୍ରସ୍ତୁତ ହୋଇ ଉଠୁଥିବା, ସେତିକି ଅଧିକ ମାତ୍ରାରେ ଏହି ତରଙ୍ଗକୁ ନିଜ ଭିତରେ ପ୍ରବାହ କରି ନିଜକୁ ଆଲୋକିତ କରି ପ୍ରକାଶ କରିପାରିବା।

ମଣିଷ ଶରୀର ଧାରଣ କରି ଏପର୍ଯ୍ୟନ୍ତ ଅମରତ୍ୱର ସ୍ୱାଦ ଚାଖି ପାରିନାହିଁ। ମାତ୍ର ମଣିଷର ଚେତନା, ବିଶ୍ୱ ତଥା ବିଶ୍ୱାତୀତ ଚେତନା ସହ ସଂଯୁକ୍ତ ହୋଇ ଚେତନା ସ୍ତରରେ ଅମର ରହିଥାଏ। ପାର୍ଥିବ ସ୍ତରରେ ଦୃଶ୍ୟମାନ ଭିତ୍ତିଭୂମି ଉପରେ ଏହି ଅମରତ୍ୱର କୌଣସି ସୂଚନା ପ୍ରାପ୍ତ ହୋଇ ନାହିଁ। ମାତ୍ର ଯେପରି ବସ୍ତୁ, ଶକ୍ତିରେ ପରିଣତ ହୋଇପାରିବ, ସେହିପରି ଶକ୍ତି ମଧ୍ୟ ବସ୍ତୁରେ ପରିଣତ ହୋଇପାରିବ ବୋଲି ବୈଜ୍ଞାନିକ ଆଲ୍‌ବର୍ଟ ଆଇନ୍‌ଷ୍ଟାଇନ୍ ତାଙ୍କ ଆପେକ୍ଷିକ ତତ୍ତ୍ୱରେ ପ୍ରମାଣ କରିଯାଇଛନ୍ତି ($E=MC^2$)।

ଯଦି ପାର୍ଥିବ ଜଗତର ଶକ୍ତି, ବସ୍ତୁରେ ପରିଣତ ହୋଇପାରିବ, ତେବେ ଚେତନା (ଆଧ୍ୟାତ୍ମିକ ଜଗତର ଶକ୍ତି) ମଧ୍ୟ ମାନବ ଶରୀରରେ ପରିଣତ ହୋଇପାରିବ ବୋଲି ଆମେ କାହିଁକି ଆଶା କରି ନପାରିବା ? ଏଭଳି ଅବସ୍ଥା ଆସିପାରେ, ଯେଉଁଠି ମଣିଷ ଶରୀର ସ୍ତରରୁ ଚେତନା ସ୍ତରକୁ ଗତି କରିପାରିବ। ଯଦି ଏପରି ହେବାର ସମ୍ଭାବନା ଅଛି, ତେବେ ମୃତ୍ୟୁ ଏବଂ ଅମରତ୍ୱର ପ୍ରତିବନ୍ଧଟି ଆପେଆପେ ଅପସରି ଯିବ। ଜଣେ ମୃତ୍ୟୁକୁ ଦୁଃଖର ଦ୍ୱାର ବୋଲି ବିବେଚନା କରିବ ନାହିଁ। ଏହା ଅନନ୍ତ ଜୀବନଯାତ୍ରା ପଥର ଏକ ଦ୍ୱାର ବୋଲି ଗଣାହେବ। ଏହାର ଅର୍ଥ ; ଏପରି ଏକ ମାନସିକ ସ୍ତର ଆସିବ, ଯେତେବେଳେ ମଣିଷ ସଚେତନ ଭାବରେ ଏବଂ ଖୁସିରେ ଏହି ଦ୍ୱାରକୁ ପାରହେବ। ଆମ ଶାସ୍ତ୍ରମାନଙ୍କରେ ଏବଂ

ଭଗବତ୍ ଗୀତାରେ ଏ କଥା କୁହାଯାଇଛି। ଯୋଗସାଧନା ମାଧ୍ୟମରେ ଜଣେ ଈଶ୍ୱରଙ୍କ ଆବାସରେ ବାସ କରିପାରିବ ଏବଂ ଜନ୍ମମୃତ୍ୟୁର ବନ୍ଧନରେ ବା ଚକ୍ରରେ ପଡ଼ିବ ନାହିଁ। ପୃଥିବୀ ପୃଷ୍ଠରେ ମଣିଷ ଜନ୍ମ ମୃତ୍ୟୁ ମଧ୍ୟରେ ସୀମାବଦ୍ଧ, ମାତ୍ର ଉଚ୍ଚତର ମାନସିକ ସ୍ତରରେ ଉପନୀତ ହେଲେ ଜୀବନଯାତ୍ରା ଦୁଃଖ ତଥା ଯନ୍ତ୍ରଣାଦାୟକ ହେବ ନାହିଁ। ଜଣେ ପୃଥିବୀ ପୃଷ୍ଠରେ ଜନ୍ମନେବ, ଜୀବନଯାତ୍ରା କରିବ ଏବଂ ପୁଣି ସଚେତନ ଭାବରେ ଶରୀର ତ୍ୟାଗ କରି ନୂଆ ଶରୀରରେ ପ୍ରବେଶ କରିବ କିମ୍ବା ଧାରଣ କରିଥିବା ଶରୀରକୁ ସୁସ୍ଥ ସବଳ ରଖି ଯୁବ ସୁଲଭ ଭାବରେ ଅମରତ୍ୱ ଲାଭ କରିବ।

ଈଶ୍ୱର ଏହି ସୃଷ୍ଟିକୁ ସର୍ଜ୍ଜନା କରିଛନ୍ତି ଏବଂ ନିଜେ ଏଇ ସୃଷ୍ଟିରେ ନିବାସ କରୁଛନ୍ତି। ଆଉ ପାଦେ ଆଗକୁ ଯାଇ ଆମେ କହିପାରିବା, ସେ ସୃଷ୍ଟିରେ ପରିଣତ ହୋଇଛନ୍ତି। ଅର୍ଥାତ୍ ସେ ନିଜେ ଏକାବେଳକେ ସ୍ରଷ୍ଟା ଓ ସୃଷ୍ଟି। ସେ ଈଶ୍ୱର, ନଶ୍ୱର, ଅମର। ତେଣୁ ତାଙ୍କରି ସୃଷ୍ଟିରେ ଆମେ ନଶ୍ୱର ଓ ଅମର। ମାତ୍ର ଆପେକ୍ଷିକ ଦୃଷ୍ଟିରେ ଆମେ କ୍ଷୟଶୀଳ ଓ ମରଣଶୀଳ। ଐଶ୍ୱରୀୟ ଅନୁଭୂତି ଉପଲବ୍ଧ ହେଲେ ଆମ କୋଷ କୋଷାଣୁରେ ଅମରତ୍ୱର ଧାରା ପ୍ରବାହିତ ହେବ।

ଈଶୋପନିଷଦର ଦ୍ୱିତୀୟ ମନ୍ତ୍ରକୁ ନେଇ ଏପର୍ଯ୍ୟନ୍ତ ଆଲୋଚନା ଜାରି ରହିଛି।

ମଣିଷର ଆୟୁଷ କେତେ ହୋଇପାରିବ, ଏ ବିଷୟରେ ଆଲୋଚନାକୁ ଆଉ କିଛି ବାଟ ଆଗେଇ ନେବାପାଇଁ ଏଠାରେ ଚେଷ୍ଟା କରାଯାଇଛି। ଜୀବ ବିଜ୍ଞାନ ଓ ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ଏଇ ମାତ୍ର ଦେଢ଼ ଶହ ବର୍ଷ ଭିତରେ ଖୁବ୍ ଦ୍ରୁତ ଗତିରେ ପ୍ରଗତି ଘଟିଛି। ଅନେକ ଉଦ୍ଭାବନ ଓ ଆବିଷ୍କାର ହୋଇଛି। ଆଗେ ସଂକ୍ରାମକ ରୋଗରେ ଆକ୍ରାନ୍ତ ହୋଇ ବହୁ ସଂଖ୍ୟାରେ



ଲୋକମାନେ ମୃତ୍ୟୁ ବରଣ କରୁଥିଲେ । ଶିଶୁ ମୃତ୍ୟୁହାର ଏତେ ବେଶି ଥିଲା ଯେ ତାହା ଜନସ୍ୱାସ୍ଥ୍ୟ ବିଜ୍ଞାନୀମାନଙ୍କ ନିଦ ହଜାଇ ଦେଉଥିଲା । ଆମେ ଶୁଣିଛୁ ବସନ୍ତ ତଥା ହଇଜା ଆଦି ରୋଗରେ ଗୋଟେ ଗୋଟେ ଗାଁ ମରଣ ଯନ୍ତାରେ ପଡ଼ି ସଫା ହୋଇ ଯାଉଥିଲେ । ବସନ୍ତ ରୋଗରୁ ଆରୋଗ୍ୟ ଲାଭ କରୁଥିବା ରୋଗୀମାନେ ବିକଳାଙ୍ଗ ହୋଇ ପଡୁଥିଲେ । ବସନ୍ତ ରୋଗ ଭୋଗିଥିବା ଲୋକମାନେ କେବେ ବି ସେ ସମୟର ଦାରୁଣ କାରୁଣ୍ୟ ଛବିକୁ ଭୁଲି ପାରିବେ ନାହିଁ । ସ୍ୱାସ୍ଥ୍ୟବିଜ୍ଞାନ ଦ୍ୱାରା ବସନ୍ତ ଟିକାର ଉଦ୍ଭାବନ ମାନବ ଜାତିପାଇଁ ଏକ ବିରାଟ ଅବଦାନ । ଏବେ ଟିକାକରଣ ଯୋଗୁଁ ବସନ୍ତ ରୋଗ ସମଗ୍ର ବିଶ୍ୱରୁ ମୂଳପୋଛ ହୋଇଯାଇଛି । ଉପଯୁକ୍ତ ଆଣ୍ଟିବାୟୋଟିକ ଔଷଧ ତଥା କିଛି ସଂକ୍ରାମକ ରୋଗପାଇଁ ପ୍ରତିଷେଧକ ଟିକାର ବ୍ୟବହାର ଯୋଗୁଁ ହଇଜା, ମ୍ୟାଲେରିଆ, ଯକ୍ଷ୍ମା, ମେନିଞ୍ଜାଇଟିସ୍, ଧନୁଷ୍ଟଙ୍କାର, ମିଳିମିଳା, ପୋଲିଓ ଆଦି ଅନେକ ପ୍ରାଣଘାତୀ ରୋଗ ବହୁ ମାତ୍ରାରେ ହ୍ରାସ ପାଇଛି ଏବଂ କିଛି ରୋଗ ବିଲୋପ ହେବା ଅପେକ୍ଷାରେ ଅଛନ୍ତି । ଏସବୁପାଇଁ ଜୀବନ ତଥା ଚିକିତ୍ସା ବିଜ୍ଞାନୀମାନଙ୍କୁ ନିଶ୍ଚିତ ଭାବରେ ଧନ୍ୟବାଦ ଦେବାକୁ ହେବ ।

ସଂକ୍ରାମକ ରୋଗ ଚିକିତ୍ସାପାଇଁ ଆଣ୍ଟିବାୟୋଟିକ ଔଷଧ ତଥା ଜୀବାଣୁ, ଭୂତାଣୁ ଆଦିର ବିଶୋଧନପାଇଁ ରସାୟନଦ୍ରବ୍ୟ ପ୍ରକୃତରେ ବୈପ୍ଳବିକ ଉଦ୍ଭାବନ । ଏହା ନିୟୁତ ନିୟୁତ ଲୋକଙ୍କର ଜୀବନ ରକ୍ଷା କରି ପାରିଛି । ଏପରିକି ସାଧାରଣ ସାବୁନ୍‌ର ବ୍ୟବହାର ଅନେକ ରୋଗ ସଂକ୍ରମଣକୁ ଅବରୋଧ କରିପାରିଛି ।

୧୧୯୯ ମସିହା ଅର୍ଥାତ୍ ଆଜିଠାରୁ ହଜାର ବର୍ଷ ତଳର ଏକ ଉଦାହାରଣରୁ ଆମେ ଏହାର ଗୁରୁତ୍ୱ ବୁଝି ପାରିବା । ଦିନ ଥିଲା ଯେତେବେଳେ ମୃତ୍ୟୁ ସହଜରେ ଆସି ହାଜର ହୋଇ ପାରୁଥିଲା, ଏପରିକି

ବଳଶାଳୀ ପ୍ରଭାବଶାଳୀ ଲୋକଙ୍କ ପାଖରେ ମଧ୍ୟ। ରିଚାର୍ଡ ଥିଲେ ଇଂଲଣ୍ଡର ଜଣେ ଦୁର୍ଦ୍ଧର୍ଷ ରାଜା। ତାଙ୍କର ଯୋଦ୍ଧୃ ଦକ୍ଷତା ତଥା ହୃଦୟବାନ୍ ବ୍ୟକ୍ତିତ୍ୱପାଇଁ ତାଙ୍କୁ କୁହାଯାଉଥିଲା ସିଂହର ହୃଦୟ (Lion heart)। ଆତତାୟୀଦ୍ୱାରା ତାଙ୍କ ବାମ କାନ୍ଧ ଶରବିଦ୍ଧ ହେଲା। ଆଜିକାଲି ହୋଇଥିଲେ, ତାଙ୍କ ଚିକିତ୍ସା କୌଣସି ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରରେ ଆରାମରେ ହୋଇ ପାରିଥାଆନ୍ତା। ଶରଟି ବାହାର କରି ଦେଇ ଉପଯୁକ୍ତ ଭାବରେ କ୍ଷତ ଜାଗାକୁ ବିଶୋଧନ କରି ଡ୍ରେସିଂ କରାଯାଇ ପାରିଥାନ୍ତା ଓ ଆଣ୍ଟିବାୟୋଟିକ୍ ଔଷଧ ଦେଇ କିଛି ଦିନ ବିଶ୍ରାମ ନେବାକୁ ପରାମର୍ଶ ଦେଇ ଛାଡ଼ି ଦିଆଯାଇଥାନ୍ତା। ଏହାକୁ ଏକ ସାଧାରଣ କ୍ଷତ ବା minor injury ଭାବରେ ଗଣା ହୋଇଥାନ୍ତା। ମାତ୍ର ସେତେବେଳେ ଏଇ ସାଧାରଣ ଚିକିତ୍ସା ପଦ୍ଧତିଟି ଉପଲବ୍ଧ ନଥିଲା। ସେତେବେଳେ ଯଦି ଏଭଳି କ୍ଷତରେ ଜୀବାଣୁ ସଂକ୍ରମଣ ହେଉଥିଲା, ତେବେ ଗାଙ୍ଗ୍ରିନ ହେବାର ଆଶଙ୍କା ରହୁଥିଲା। ଗାଙ୍ଗ୍ରିନ ହେଲେ ଅଙ୍ଗଟିକୁ କାଟି ବାହାର କରି ଦିଆ ଯାଉଥିଲା। ଦୁର୍ଭାଗ୍ୟକୁ କିଙ୍ଗ୍ ରିଚାର୍ଡଙ୍କର କାନ୍ଧରେ ଗାଙ୍ଗ୍ରିନ ହୋଇଗଲା ଏବଂ ଏହା ଅନ୍ୟ ଅଙ୍ଗକୁ ମାଡ଼ିଗଲା। କେହି ଏହାର ଉପଚାର କରି ପାରିଲେ ନାହିଁ। ଶେଷରେ ଏଭଳି ଜଣେ ବଳଶାଳୀ ରାଜା ଯନ୍ତ୍ରଣାଦଗ୍ଧ ହୋଇ ଦୁଇ ସପ୍ତାହ ପରେ ମୃତ୍ୟୁବରଣ କଲେ। କ୍ଷତଜନିତ ଏଭଳି ଏକ କରୁଣ ଅବସ୍ଥା ବିଂଶ ଶତାବ୍ଦୀରେ ସହଜରେ ହୋଇ ନଥାନ୍ତା। ଏଭଳି ସଂକ୍ରମଣ ଜନିତ ମୃତ୍ୟୁ ଯନ୍ତାରୁ ଲକ୍ଷଲକ୍ଷ ଲୋକ ସହଜରେ ମୁକ୍ତ ହୋଇ ପାରୁଛନ୍ତି ଏବଂ ସେମାନଙ୍କର ଆୟୁଷ ବୃଦ୍ଧି ହୋଇପାରୁଛି। କେବଳ ସଂକ୍ରାମକ ନୁହେଁ, ଅଣସଂକ୍ରାମକ ରୋଗଗୁଡ଼ିକ କବଳରୁ ଆଜିର ଚିକିତ୍ସା ବିଜ୍ଞାନ ମାନବ ସମାଜକୁ ବହୁ ଭାବରେ ସୁରକ୍ଷା ପ୍ରଦାନ କରିପାରୁଛି।

ଏସବୁ କାରଣରୁ ବିଭିନ୍ନ ଦେଶରେ ମଣିଷର ହାରାହାରି ବୟସ ଅନେକ ଗୁଣରେ ବୃଦ୍ଧି ହୋଇଛି। ଉଦାହରଣ ସ୍ୱରୂପ; ୧୯୪୬ ମସିହାରେ



ଆମ ଦେଶରେ ସାଧାରଣ ଜୀବନଧାରଣର ବୟସ ୩୧ ଥିଲା। ଏହା ଏବେ ୭୦ ପାଖାପାଖି ହେଲାଣି। ଆମ ପଡ଼ିଶା ଦେଶ ଚୀନରେ ଏହା ୭୭ ଏବଂ କେତେକ ବିକଶିତ ପାଶ୍ଚାତ୍ୟ ଦେଶରେ ୯୦କୁ ଛୁଇଁଲାଣି। ଏଥିରୁ ବୁଝାପଡୁଛି, ଯଦି ରୋଗ ନହେବାପାଇଁ ପ୍ରତିଷେଧକ ବ୍ୟବସ୍ଥା, ଉପଯୁକ୍ତ ଖାଦ୍ୟପେୟ, ବିଶ୍ରାମ, ଅବସର ବିନୋଦନର ଉପଲବ୍ଧି ଓ ଉପଯୁକ୍ତ ରୋଗ ଚିକିତ୍ସା ସୁବିଧା ସମସ୍ତଙ୍କପାଇଁ ଉପଲବ୍ଧ ହୁଏ, ତେବେ ମଣିଷ ଆରାମରେ ଶହେ ବର୍ଷ ବଞ୍ଚିପାରିବ। ଅନେକେ ୧୫୦ ପର୍ଯ୍ୟନ୍ତ ବି ବଞ୍ଚିପାରିବେ। ଏହା ମଣିଷର ହାତ ପାଆନ୍ତାରେ ଅଛି। କେବଳ ସାମାଜିକ ଓ ରାଜନୈତିକ ଇଚ୍ଛାଶକ୍ତିଟି ଆଗଭର ହୋଇ ଉଠିଲେ ଏହା ହୋଇପାରିବ।

ଜୀବ ବିଜ୍ଞାନୀମାନେ ଏବେ ଜିନ୍ ଉପରେ ଅନେକ କାମ ଆରମ୍ଭ କଲେଣି, ଯାହା କି ମଣିଷର ଆୟୁକୁ ଦିନେ ପାଞ୍ଚ ଶହ ବା ହଜାରେ ବର୍ଷରେ ପହଞ୍ଚାଇ ନଦେବ ବୋଲି କିଏ କହିବ !

ଆମେ ଆଉ ପାଦେ ଆଗକୁ ଯାଇ କହିପାରିବା, ଏମିତି ଏକ ସମୟ ଆସିପାରେ, ଯେତେବେଳେ ମଣିଷ ଇଚ୍ଛା କଲେ ମୃତ୍ୟୁ ବରଣ କରିବ, ନଚେତ ଅମର ହୋଇ ରହିବ। ଆହୁରି ବି ଏପରି ହୋଇପାରେ, ମଣିଷ ଜନ୍ମ ମୃତ୍ୟୁର ଗୋଲକ ଧନ୍ଦାରୁ ମୁକ୍ତହୋଇ ସ୍ୱଇଚ୍ଛାରେ ଶରୀର ଧାରଣ କରିବ ଓ ସ୍ୱଇଚ୍ଛାରେ ଶରୀର ପରିତ୍ୟାଗ କରିବ। ଭଗବତ ଗୀତାର ଦ୍ୱିତୀୟ ଅଧ୍ୟାୟରେ ଲେଖାଯାଇଛି –

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ,<br>
ନବାନି ଗୃହ୍ଣାତି ନରୋପରାଣି।<br>
ତଥା ଶରୀରାଣି ବିହାୟ ଜୀର୍ଣ୍ଣା,<br>
ନ୍ୟନ୍ୟାଦି ସଂଯାତି ନବାନି ଦେହୀ।।

ଅର୍ଥାତ୍ ମନୁଷ୍ୟ ପୁରୁଣା ବସ୍ତ୍ର ବଦଳାଇ ନୂତନ ବସ୍ତ୍ର ଗ୍ରହଣ କରିବା ପରି ଜୀବାତ୍ମା ପୁରୁଣା ଶରୀର ତ୍ୟାଗ କରି ନୂତନ ଶରୀର ଗ୍ରହଣ କରିଥାଏ।

ଶରୀରର ଅମରତ୍ୱ ଉପରେ ଶ୍ରୀମା, ଶ୍ରୀଅରବିନ୍ଦଙ୍କର ପ୍ରଜ୍ଞା ପ୍ରଦୀପିକା (Thoughts and Aphorism)ର ୫୪ କାରିକାରେ କରିଥିବା ଆଲୋଚନାର କିଛି ଅଂଶ ଏଠାରେ ଉଲ୍ଲେଖ କରୁଛି।

54 - You say that the flavour of the pot alters the liquor - That is taste; but what can deprive it of its immortalising faculty?

"....ବର୍ତ୍ତମାନ ଆମେ ଯେତେବେଳେ କହୁଛୁ, ପରମେଶ୍ୱରଙ୍କ ସାଙ୍ଗରେ ଯୁକ୍ତ ହୋଇଗଲେ ଆମେ ଅମରତ୍ୱର ଚେତନା ଲାଭ କରୁ, ଅର୍ଥାତ୍ ଆମ ଭିତରର ଚେତନା ଅମରତ୍ୱର ଚେତନା ସହ ଯୋଡ଼ି ହୋଇଯାଏ, ଫଳରେ ନିଜ ଭିତରେ ଅମରତ୍ୱ ଉପଲବ୍ଧି ହେଲା ବୋଲି ଅନୁଭବ ହୁଏ। ଯେଉଁ ଉଚ୍ଚସ୍ତରୀୟ ଜଗତ ସକଳରେ ଅମରତ୍ୱ ରହିଛି, ସେ ସମ୍ବନ୍ଧରେ ଆମେ ସଚେତନ ହୋଇଯାଉ। ମାତ୍ର ଏହାର ଅର୍ଥ ନୁହେଁ ଯେ, ଆମ ଶରୀର ଚେତନା ରୂପାନ୍ତରିତ ହୋଇଗଲା ଏବଂ ଶରୀର ଅମର ହୋଇଗଲା। ଶରୀରର ଅମରତ୍ୱପାଇଁ ଆଉ ଏକ ଉପାୟ ଅନୁସରଣ କରିବାକୁ ହେବ। ତୁମେ କେବଳ ଏହି ଚେତନା ଲାଭ କରିବ, ସେକଥା ନୁହେଁ, ତୁମକୁ ସେହି ଚେତନାକୁ ଜଡ଼ଭୂମି ପର୍ଯ୍ୟନ୍ତ ଓହ୍ଲାଇ ଆଣିବାକୁ ପଡ଼ିବ ଏବଂ ଜଡ଼ଚେତନାକୁ ରୂପାନ୍ତରିତ ହେବାପାଇଁ ଛାଡ଼ିଦେବାକୁ ହେବ। କେବଳ ଜଡ଼ ଚେତନା ଉପରେ ନୁହେଁ, ଜଡ଼ ଜଗତର ଓ ମୂଳ ତତ୍ତ୍ୱଗୁଡ଼ିକ ଉପରେ ବି ତାଙ୍କୁ ରୂପାନ୍ତର କାର୍ଯ୍ୟ କରିବାକୁ ପଡ଼ିବ। ଏହି ଶେଷୋକ୍ତ କାର୍ଯ୍ୟଟି ଅତ୍ୟନ୍ତ ଦୁରୂହ ଅଟେ।" - ଶ୍ରୀମା

ଆଜି ଶିବିରର ଦ୍ୱିତୀୟ ଦିନ। ପାହାନ୍ତା ରାତିରେ ଦେଖିଥିବା ସ୍ୱପ୍ନଟି ସକାଳ ପର୍ଯ୍ୟନ୍ତ ତାଜା ହୋଇ ରହିଥିଲା। ସ୍ୱପ୍ନଟି ଥିଲା ଏହିପରି:-

ଚାରିଆଡ଼େ କଳା କିଟିମିଟି ଅନ୍ଧାର। କୋଠରୀରେ ସବୁ ପଟରୁ ଦୁଆର ବନ୍ଦ। ହଠାତ୍ ମୁଁ ସେଇ ବନ୍ଦ ଦୁଆର ଓ ଅନ୍ଧକାରାଚ୍ଛନ୍ନ କୋଠରୀରେ ନିଜକୁ ଆବିଷ୍କାର କଲି। ବିରାଟ ଝଡ଼ତୋଫାନ କାନ୍ଥ ଉପରେ ପିଟି ହେଉଥିଲା। ମୁଁ ଅନୁଭବ କରୁଥିଲି ମୋତେ ଯେପରି କିଏ ରକ୍ଷା କବଚ ପିନ୍ଧାଇ ଦେଇ ଆଶ୍ୱାସନା ଦେଇ ଚାଲିଛି। ମୁଁ ନୀରବ ଥିଲି, ମାତ୍ର ସଚେତନ ଭାବରେ ଘଟଣାଗୁଡ଼ିକୁ ଅବଲୋକନ କରୁଥିଲି।

ଝଡ଼ ଗୁରୁତର ହେବାକୁ ଲାଗିଲା। ମୋ' ସମ୍ମୁଖରେ ଥିବା କାନ୍ଥଟା ଭୁଶୁଡ଼ି ପଡ଼ିଲା। ଇଟା, ବାଲି, ସିମେଣ୍ଟର କୌଣସି ଚିହ୍ନବର୍ଣ୍ଣ ନଥିଲା। ହଠାତ୍ ଏକ ବିକଟାଳ ଶବ୍ଦ ଶୁଭିଲା। ତା'ପରେ କାନ୍ଥଟା ଉଭେଇ ଗଲା।

ଶେଯ ପରିତ୍ୟାଗ କରି ଓ ନିତ୍ୟକର୍ମ ସାରି ସମସ୍ତେ ଦ୍ୱିତୀୟ ଦିନ ପାଇଁ ପ୍ରସ୍ତୁତ ହୋଇଗଲେ।

ସକାଳର ସୂର୍ଯ୍ୟ ପୂର୍ବ ଆକାଶରେ ସିନ୍ଦୁରା ଫିଟାଇଲେ। ସେତେବେଳକୁ ଆମ ତନୁ ମନ ପ୍ରସ୍ତୁତ ହୋଇ ସାରିଥିଲେ ସକାଳ ଶ୍ରମରେ ଯୋଗ ଦେବାପାଇଁ। ଏହି ସମୟରେ ସବୁଜ ବନାନୀ ଓ ପାହାଡ଼ୀ ପରିବେଶର ନୀରବତା ଭିତରେ ଅନ୍ତର ଦେବତାଙ୍କର କଥାମୃତ ପ୍ରତିଧ୍ୱନିତ ହେବାକୁ ଲାଗିଲା।

"ହୃଦୟ ଦେଇ ଭଲ ପାଅ। ସମସ୍ତଙ୍କ ଶରୀର ଅଲଗା ଅଲଗା ହୋଇ ରହିଥାଉ, ମାତ୍ର ସଭିଏଁ ହୃଦୟରେ ପରସ୍ପର ସହ ମିଶି ଯାଅ। ଜଗତଟା ଖୁବ ସୁନ୍ଦର। ସଭିଏଁ ଏକାଠି ବସି ଏଥିରୁ ଶିକ୍ଷାଲାଭ କର। ଚେଷ୍ଟାକର ଈଶ୍ୱରଙ୍କର ପ୍ରକୃତି କୋଳରୁ ଶାଶ୍ୱତ ଏବଂ ଅସରନ୍ତି ଆନନ୍ଦ ଲାଭ କରିବାପାଇଁ। ଏଥିପାଇଁ କେବଳ ନିଜ ନିଜର ଆଖିର ଯବକାଚକୁ ଆଉଜଷ୍ଟ କରିବାକୁ ହେବ।

ଅନୁଭବ କର,

ଆମେ ସମସ୍ତେ ସୂର୍ଯ୍ୟଙ୍କ ସନ୍ତାନ। ସନ୍ତାନ ଭାବରେ, ଚାଲ ନିଜ ଭିତରେ ସୂର୍ଯ୍ୟଙ୍କ ଔଜଲ୍ୟ ଅନୁଭବ କରିବା। ପୁରୁଣା ଦିନଗୁଡ଼ିକ ଚାଲିଯିବେ, ନୂଆ ଦିନଗୁଡ଼ିକୁ ଅପେକ୍ଷା କରିବା। ଆମର ସକଳ ଚିନ୍ତା ମାନବପ୍ରେମୀ ହେଉ। ଆମେ ଯେପରି କଳ୍ପନା କରୁଛୁ, ଆମ ଭିତରେ ସେହିପରି ଭାବରେ ଶକ୍ତି ସଞ୍ଚାରିତ ହେଉ।

ହେ ଈଶ୍ୱର !

ଆମେ କେବଳ ତୁମପାଇଁ ଜୀବନ ବଞ୍ଚିବୁ। କୃପାକରି ଆମ ଭିତରେ ଲୁଚି ରହିଥିବା 'ମୁଁ' ପଣିଆକୁ ବିହରଣ କର।

ଗତକାଲି ପରି ଆଜି ସକାଳେ ଆମେ ପୋଖରୀ ଖୋଳା କାମରେ ଲାଗି ରହିଲୁ। ମୁଁ, ବିନୋଦ, ଅନନ୍ତ ଭାଇ (ଦିବ୍ୟଂଗତ) ଓ ରାମଭାଇ ମାଟି ଖୋଳା କାମରେ ନିୟୋଜିତ ରହିଲୁ। ମାଟି ଗାଣ୍ଡୁଆରେ ଭରିବା ପାଇଁ ଦି'ଜଣ ଭାଇ ରହିଲେ। ଅନ୍ୟମାନେ ଧାଡ଼ିରେ ରହି ମାଟିକୁ ଖୋଳା ଜାଗାରୁ ନେଇ ହୁଡ଼ାରେ ପକାଇବାରେ ଲାଗିଗଲେ। କୁନି କୁନି ସ୍କୁଲ ପିଲାମାନେ ଖାଲି ଗାଣ୍ଡୁଆଗୁଡ଼ିକୁ ମୂଳ ଜାଗାକୁ ଫେରାଇ ଆଣିବାରେ ସାହାଯ୍ୟ କଲେ। ମାଟି ଖୋଳା ଓ ଆନୁଷଙ୍ଗିକ କାମ ରୁଟିନ୍ ଅନୁସାରେ ଚାଲିଲା। ଚିତ୍ତଭାଇଙ୍କ ପାଦ ଫୁଲିଥିବାରୁ ଆମେ ତାଙ୍କୁ କାମରେ ଯୋଗଦେବାପାଇଁ ବାରଣ କରିଥିଲୁ। ସେ ଏହି ସମୟତକ ତାଙ୍କ ପଢ଼ାପଢ଼ି ଓ ଲେଖାଲେଖିରେ ବିତାଇଥିଲେ। ଦେହ ଖରାପ ଲାଗୁଥିଲେ ବି ମୋତେ କେବଳ ଯାହା ଟିକିଏ କହୁଥିଲେ ଏବଂ ଅନ୍ୟମାନେ ଯେପରି ନଜାଣିବେ ସେଥିପାଇଁ ସଜାଗ କରି ଦେଉଥିଲେ। ଅବାଗିଆ ଲୋକ, ଏତେ ବେଶି ଉତ୍କଟ ନହେଲେ ଔଷଧ ଖାଇବେ ନାହିଁ। ମୁଁ ବି ଦେଖୁଥିଲି କାମରେ ମିଶିବାପାଇଁ ଯଦି ଆମେ ଅନୁମତି ନଦେବୁ, ତେବେ ବିଶ୍ରାମଟା ଆରୋଗ୍ୟ ଲାଭପାଇଁ ତାଙ୍କୁ ସାହାଯ୍ୟ କରିବ। ଭଲକଥା ଯେ ସେ ମୋ' କଥା ମାନୁଥିଲେ।



ସକାଳ ଜଳଖିଆରେ ଗତକାଲି ପରି ଚୁଡ଼ା ଉପମା ଓ ପଖାଳ ଥିଲା। ସିଝା କନ୍ଦମୂଳ ବି ଡାଲାରେ ରଖାଯାଇଥିଲା। ଅଧା ଖରା, ଅଧା ଛାଇ ଜାଗା ବାଛି ଦରି ପଡ଼ିଯାଇଥିଲା ଅଗଣାରେ। ଆମେ ଉପନିଷଦୀୟ ଢଙ୍ଗରେ ଗୁରୁଙ୍କୁ ବେଢ଼ି ବସିଲା ପରି ଚିତ୍ତଭାଇଙ୍କ ଚାରିପାଖରେ ବସିଲୁ। ପ୍ରଥମେ ଗତକାଲି ଶିଖିଥିବା ଈଶୋପନିଷଦର ପ୍ରଥମ ଦୁଇଟି ମନ୍ତ୍ରକୁ ଅଭ୍ୟାସପାଇଁ ଆବୃତ୍ତି କଲୁ। ଯାହା ପ୍ରଶ୍ନ ଉଦ୍ରେକ ହୋଇଥିଲା ତା'ଉପରେ ପ୍ରାୟ ଘଣ୍ଟାଏ କାଳ ଆଲୋଚନା କରାଗଲା। ତାପରେ ତୃତୀୟ ମନ୍ତ୍ର ଆବୃତ୍ତି କଲୁ। ଚିତ୍ତଭାଇ ବୁଝାଇବା ପରେ ପ୍ରଶ୍ନୋତ୍ତର ମାଧ୍ୟମରେ ଆଲୋଚନା ସକାଳର ଅଧିବେଶନଟିକୁ ସତେଜ କରି ରଖିଲା।

× × × ×

ତୃତୀୟ ମନ୍ତ୍ର-

ଅସୂର୍ଯ୍ୟା ନାମ ତେ ଲୋକା ଅନ୍ଧେନ ତମସାବୃତାଃ।
ତାଁସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି ଯେ କେ ଚାତ୍ମହନୋ ଜନାଃ ।।

ଏହି ମନ୍ତ୍ରର ମୋଟାମୋଟି ଅର୍ଥ ଏହିପରି ବୁଝିଲି -

ଏଭଳି ସବୁ ଜଗତ ଅଛି ଯେଉଁଠି ସୂର୍ଯ୍ୟ ପ୍ରକାଶ ହୁଅନ୍ତି ନାହିଁ। ସେଠାରେ କେବଳ ଅନ୍ଧକାର ଆଉ ଅନ୍ଧକାର। ଯେଉଁମାନେ ଏଇ ମର୍ତ୍ତ୍ୟଭୂମିରେ ବାସ କଲାବେଳେ ସ୍ୱ ଆତ୍ମାକୁ ଖାତିର ନକରି ହତ୍ୟା କରିଥାଆନ୍ତି, ସେମାନେ ସେଇ ଅନ୍ଧକାରାଚ୍ଛନ୍ନ ଜଗତକୁ ଯାଆନ୍ତି।

ମଧ୍ୟାହ୍ନ ଭୋଜନ ପର୍ଯ୍ୟନ୍ତ ଏଇ ଗୋଟିଏ ମନ୍ତ୍ରରେ ଆମେ ସୀମିତ ରହିଲୁ। ମନ୍ତ୍ରର ସ୍ୱର ମୋତେ ଏତେ ଭଲ ଲାଗୁଥିଲା ଯେ ବାରମ୍ବାର ଗୁଣୁଗୁଣୁ ହୋଇ ଆବୃତ୍ତି କରିବାରେ ଲାଗିଲି... "ଅସୂର୍ଯ୍ୟା ନାମ ତେ ଲୋକା...."। ସମସ୍ତଙ୍କ ଟିପା ଖାତା ଅବା ଦିନଲିପି ଉପରେ କଲମଗୁଡ଼ିକ ବହୁତ ଧୀରସ୍ଥିର ଥିଲେ, ମାତ୍ର ସକ୍ରିୟ ଥିଲେ।

"ଅସୂର୍ଯ୍ୟା ନାମ ତେ ଲୋକାଃ...." ମନ୍ତ୍ରଟି ଉପରେ ଆଉ କିଛି କଥା ମନରେ ଠଣା ମାରିହେଲା। ମୁଁ ଶ୍ରୀଅରବିନ୍ଦଙ୍କ ବ୍ୟାଖ୍ୟାଟି ଉପରେ ମନ ଲଗାଇ ଦେଖିଲି। ଅନ୍ୟକେତେକ ବ୍ୟାଖ୍ୟାରେ ଅସୂର୍ଯ୍ୟା ଶବ୍ଦରେ ଅସୁରମାନଙ୍କ ରାଜ୍ୟ ବିଷୟରେ କୁହାଯାଇଛି। ଏସବୁ ବ୍ୟାଖ୍ୟା ମୋ ମନକୁ ଗଲା ନାହିଁ, କାରଣ ଅସୂର୍ଯ୍ୟା ଶବ୍ଦରେ ଦୀର୍ଘ ଉକାର ଥିଲାବେଳେ ଅସୁର ଶବ୍ଦରେ ହ୍ରସ୍ୱ ଉକାର ଅଛି। ଶ୍ରୀଅରବିନ୍ଦଙ୍କ ବ୍ୟାଖ୍ୟାରେ ଅସୂର୍ଯ୍ୟ ଶବ୍ଦର ସୂର୍ଯ୍ୟନାସ୍ତି ଅର୍ଥଟିକୁ ବର୍ଣ୍ଣନା କରାଯାଇଛି।

ମଣିଷର ଶରୀର କୋଷକୁ, ପ୍ରାଣ ଓ ମନର କୋଷ ଆଚ୍ଛାଦନ କରି ରହିଛନ୍ତି। ଅନ୍ତରତମ ପ୍ରଦେଶରେ ସର୍ବମୟ ଚେତନା ବା ପରମବ୍ରହ୍ମଙ୍କ ପ୍ରତିନିଧି ରୂପେ ଚୈତ୍ୟପୁରୁଷ ଗୁହ୍ୟ ହୋଇ ରହିଛନ୍ତି। ସେ ମଣିଷର ସର୍ବାଙ୍ଗୀଣ ପ୍ରସ୍ତୁତିଟିକୁ ଅପେକ୍ଷା କରିଛନ୍ତି, ଯଦ୍ୱାରା ମଣିଷର ଆଧ୍ୟାତ୍ମିକ ପ୍ରଗତିରେ ସିଧାସଳଖ ପଥପ୍ରଦର୍ଶକ ହୋଇ ପାରିବେ। ମାତ୍ର ସାଧାରଣ ଭାବରେ ମଣିଷର ଜାଗତିକ ଜୀବନକୁ ପରିଚାଳନା କରିବାପାଇଁ ମନ, ମୁଖ୍ୟ କର୍ଣ୍ଣଧାର ହୋଇଥାଏ। ଅଜ୍ଞାନରୁ ଜ୍ଞାନ ତଥା ବିଶେଷ ଜ୍ଞାନର ଏକ ବିସ୍ତୃତ ପରିଧି ଭିତରେ ମନ ବିଚରଣ କରୁଥାଏ। ଅନେକ ପାରିବେଶିକ ତଥା ଅନ୍ତର୍ଗତ ସୂଚନାକୁ ବିଶ୍ଳେଷଣ କରି ମନ ନିଜ ବୁଝିବା ଅନୁସାରେ ଜୀବନର ବିକାଶ ଓ ଅଭିବ୍ୟକ୍ତି କରିଥାଏ।

ମଣିଷର ଶରୀର ଅନ୍ୟ ଜୀବମାନଙ୍କ ପରି ମରଣଶୀଳ। ପ୍ରାୟ ଷାଠିଏରୁ ଶହେ ବର୍ଷ ଭିତରେ ମଣିଷମାନେ ମୃତ୍ୟୁ ବରଣ କରୁଛନ୍ତି। ମୃତ୍ୟୁପରେ ମଣିଷର କ'ଣ ହୁଏ ସେକଥା ଠୋସ୍ ଭାବରେ ବିଜ୍ଞାନ ଏପର୍ଯ୍ୟନ୍ତ କହି ପାରୁନି। କିନ୍ତୁ ଏତିକି ଜଣା ଅଛି, ଶରୀର ଯେଉଁ ଯେଉଁ ପଞ୍ଚଭୂତ (କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ) ରେ ତିଆରି, ସେସବୁ ମରଣ ପରେ ନିଜ ନିଜ ଉତ୍ସରେ ଲୀନ ହୋଇଯାନ୍ତି। ମାତ୍ର

ଯେଉଁ ଅଦୃଶ୍ୟ ଉପାଦାନ ବା ଶକ୍ତିମାନେ ଜୀବନକୁ ସଚଳ ସଜଳ କରି ରଖିଥାନ୍ତି, ସେମାନଙ୍କର ଗତି କ'ଣ ହୁଏ ? ଉଦାହରଣ ସ୍ୱରୂପ; ପ୍ରାଣ, ମନ, ଚିତ୍ତଶକ୍ତି ବା ଚୈତ୍ୟ ପୁରୁଷ। ଏମାନଙ୍କର ସମସ୍ତଙ୍କର ନିଜ ନିଜର ଜଗତ ଅଛି। ପଞ୍ଚଭୂତ ମିଶିଗଲା ପରି ଏମାନେ ସ୍ୱ-ସ୍ୱ ଉଚ୍ଚ ଜଗତରେ ପ୍ରବେଶ କରନ୍ତି।

ପୁନର୍ଜନ୍ମରେ ବିଶ୍ୱାସ ନକଲେ ଏଭଳି ପ୍ରଶ୍ନସକଳର ଉତ୍ତର ଖୋଜିବା କଷ୍ଟକର ହୋଇଯାଏ। ପୁନର୍ଜନ୍ମ ଅନୁସାରେ 'ପୁନରପି ଜନମଂ ପୁନରପି ମରଣଂ, ପୁନରପି ଜନନୀ ଜଠରେ ଶୟନ'- ଏକ ନିରନ୍ତର ପ୍ରକ୍ରିୟା। ପ୍ରକୃତରେ ଜୀବନ କେଉଁଠି ଅଟକି ଯାଉନି। ଜନ୍ମ ମୃତ୍ୟୁର ପ୍ରାକୃତିକ ଦ୍ୱାରଦେଇ ଏକ ବିବର୍ତ୍ତନର ଯାତ୍ରା ଅନନ୍ତ କାଳରୁ ଚାଲୁ ରହିଛି। ଜନ୍ମ ଜନ୍ମର ଅନୁଭୂତିଗୁଡ଼ିକୁ ସଂଗ୍ରହ କରି ମଣିଷ ଜୀବନକୁ ପରିଚାଳିତ କରୁଥିବା ମୁଖ୍ୟ କର୍ଣ୍ଣଧାର ମନ, ପରବର୍ତ୍ତୀ ମଣିଷ ଜନ୍ମଟି କିପରି ଅଧିକ ଉପାଦେୟ ହେବ, ଅଧିକ ଶିକ୍ଷଣୀୟ ଏବଂ ଅନୁଭୂତି ସମ୍ପନ୍ନ ହେବ ସେଥିପାଇଁ ପ୍ରସ୍ତୁତ ହେବାକଥା। ଚୈତ୍ୟ ପୁରୁଷ ପଥପ୍ରଦର୍ଶକ ହୋଇ ମନକୁ ସାହାଯ୍ୟ କରିବାକୁ ଅପେକ୍ଷା କରିଥାନ୍ତି। ମଣିଷ ଜୀବନର ଏକ ମହତ୍ତ୍ୱପୂର୍ଣ୍ଣ ଉଦ୍ଦେଶ୍ୟ ଅଛି, ଯାହାର ପରିପୂର୍ତ୍ତିପାଇଁ ଏଭଳି ପ୍ରସ୍ତୁତି ହେବା ଆବଶ୍ୟକ, ଯଦ୍ୱାରା ମଣିଷର କଳ୍ପନା ରାଜ୍ୟକୁ ମାଡ଼ି ବସିଥିବା ସ୍ୱର୍ଗୀୟ ସୁଖକୁ ସେ ଏଇ ଜଗତରେ ପ୍ରାପ୍ତ କରିପାରିବ। ଶ୍ରୀଅରବିନ୍ଦଙ୍କ ଭାଷ୍ୟ ଅନୁସାରେ, ଏହି ତମିସ୍ରା, ମିଥ୍ୟା, ମୃତ୍ୟୁ ଓ ବେଦନା ପୂର୍ଣ୍ଣ ଜଗତରେ ପରବ୍ରହ୍ମଙ୍କର ପ୍ରକଟନ ଘଟିବ ଏବଂ ଏଠାରେ ସତ୍ୟ, ଜ୍ୟୋତି, ଦିବ୍ୟଜୀବନ ଏବଂ ଅମର ଆନନ୍ଦ ଉପଲବ୍ଧ ହେବ।

ଏହି 'ଅସୂର୍ଯ୍ୟା ନାମ ତେ ଲୋକାଃ....' ମନ୍ତ୍ରରେ ଏକଥା କୁହାଯାଇଛି ଯେ ଯଦି ମଣିଷ ମର୍ତ୍ତ୍ୟ ଭୂମିରେ ଜୀବନ ଉପଭୋଗ କରୁ କରୁ ଜୀବନର ଅସଲ ଉଦ୍ଦେଶ୍ୟକୁ ଭୁଲିଗଲା, ତେବେ ସେ ଅନ୍ତରସ୍ଥ ଜୀବାତ୍ମା ବା

ଚୈତ୍ୟପୁରୁଷକୁ ହତ୍ୟାକଲା ବୋଲି ଜାଣ। ପରମ ଜ୍ଞାନ, ପରମ ଆଲୋକ, ପରମ ସୌନ୍ଦର୍ଯ୍ୟ, ପରମ ପ୍ରେମ ତଥା ପରମ ଆନନ୍ଦର ଗନ୍ତାଘରକୁ ହାତଛଡ଼ା କଲା। ଏଭଳି କ୍ଷେତ୍ରରେ ବ୍ୟକ୍ତି ଅନ୍ତର୍ସତ୍ତା, ମୃତ୍ୟୁପରେ ଆଲୋକିତ ରାଜ୍ୟକୁ ନଯାଇ ସୂର୍ଯ୍ୟପ୍ରକାଶହୀନ ଅନ୍ଧକାରାଚ୍ଛନ୍ନ ରାଜ୍ୟରେ ପ୍ରବେଶ କରନ୍ତି।

× × × ×

ମଧ୍ୟାହ୍ନ ଭୋଜନ ସାରି ସମସ୍ତେ ବିଶ୍ରାମ ନେବାକୁ ଗଲେ। ଗୋଟିଏ କୋଣରୁ ଡୁବିତାବ୍‌ଲାର ଟୁଙ୍ଗ୍‌ଟାଙ୍ଗ୍ ଶବ୍ଦ କାନରେ ବାଜୁଥିଲା। ଆଜି ମୁଁ ଗଡ଼ପଡ଼ ହେବାରୁ ବିରତ ହେଲି। ଡାକ୍ତର ଜାନୁସ୍ କୋର୍ସାକଙ୍କ ଦ୍ୱାରା ଲିଖିତ "How to love a Child" ବହିଟି ବ୍ୟାଗ୍‌ରୁ ବାହାର କଲି। ଗୋଟିଏ ଅଂଶ ଆଖିରେ ପଡ଼ିଗଲା। ଏହାକୁ ମୁଁ ଓଡ଼ିଆରେ ଅନୁବାଦ କରିବାରେ ଲାଗିପଡ଼ିଲି। ଅନୁବାଦଟି ଏହିପରି ଥିଲା:-

ସୂର୍ଯ୍ୟ ଉଜ୍ଜ୍ୱଳ ରଶ୍ମି ପ୍ରଦାନ କରୁଛନ୍ତି ବୋଲି କ'ଣ ପୃଥିବୀ ସୂର୍ଯ୍ୟଙ୍କ ପ୍ରତି କୃତଜ୍ଞ ରହେ ? ବୃକ୍ଷଟି ଯେଉଁ ମଞ୍ଜିଠାରୁ ଜନ୍ମଲାଭ କରି ବିକଶିତ ହୋଇଛି, ତା'ପ୍ରତି କ'ଣ କୃତଜ୍ଞ ଅଟେ ? ବୁଲବୁଲ୍ ପକ୍ଷୀଟି ଯେଉଁ ମା'ର ପର ଆବୃତ ଛାତିରେ ଉଷ୍ମତା ପାଉଥିଲା, ସେଇ ମା'କୁ କ'ଣ ଗୀତଗାଇ କେବେ ଧନ୍ୟବାଦ ଜଣାଇଛି ? ତୁମେ ତୁମ ପିତାମାତାଙ୍କଠାରୁ ପାଇଥିବା ଉପହାରଗୁଡ଼ିକୁ ତୁମ ପିଲାଙ୍କୁ ଦିଅ କିମ୍ବା ତୁମେ ସେସବୁକୁ ଫେରାଇ ଆଣିବା ପାଇଁ କେବଳ ଧାର ସୂତ୍ରରେ ଦିଅ ଏବଂ ଏଥିପାଇଁ ସୁଧ ଆଦିର ହିସାବ କରି ଯତ୍ନର ସହ ଲେଖି ରଖ ? ଭଲପାଇବା କ'ଣ ଏକ କୃପାଦୃଷ୍ଟି, ଯେଉଁଥିପାଇଁ ତୁମେ ପାରିଶ୍ରମିକ ଦାବିକର ?

---

ବିଦ୍ର: ଡାକ୍ତର ଜାନୁସ୍ କୋର୍ସାକ୍‌ଙ୍କ ପ୍ରତ୍ୟେକ ପିଲାଙ୍କୁ ଭଲପାଇବା ସମ୍ବନ୍ଧୀୟ ଲେଖାର କିଛି ଅଂଶ ଜାନୁସ୍ କୋର୍ସାକଙ୍କ ଜୀବନୀ "ଜଣେ ଶିକ୍ଷକଙ୍କ କାହାଣୀ" ପୁସ୍ତକରେ ମୁଁ ଲେଖିଛି। ଡାକ୍ତର କୋର୍ସାକ୍‌ଙ୍କ ଜୀବନ ଅତ୍ୟନ୍ତ ଲୋମହର୍ଷଣକାରୀ।)



× × × ×

ଆଜି ଅପରାହ୍ଣରେ ଆମେ ଚତୁର୍ଥ ମନ୍ତ୍ରଟିକୁ ଆବୃତ୍ତି କରି ଶିଖିଲୁ। କେବଳ ମନ୍ତ୍ରର ଅର୍ଥ ବୁଝି ପୁରୁଣା ନୂଆର କିଛି କିଛି ଆଲୋଚନା କରୁକରୁ ସମୟ ଶେଷ ହୋଇଗଲା। ଏହି ମନ୍ତ୍ରର ଆଲୋଚନା ପରେ ଉପସ୍ଥାପନ କରିବି। ଉପରଓଳିର ଶ୍ରମସାରି ଆମେ ଆଜି ଜନମହୁଡ଼ି ପାହାଡ଼ ଆଡ଼େ ବୁଲି ବାହାରିଲୁ। ପାହାଡ଼ ଆରୋହଣ କରିବା ଯେତିକି ମଜାଦାୟକ ଥିଲା, ପାହାଡ଼ ଉପରେ ଥଳ ଜାଗା ଦେଖି ପ୍ରକୃତିର ସୌନ୍ଦର୍ଯ୍ୟକୁ ଅବଗାହନ କରିବାର ଆନନ୍ଦ ତା'ଠାରୁ ବଳି ପଡୁଥିଲା। ମଝିରେ ମଝିରେ ଭାଲୁ ଗୁମ୍ଫାକୁ ନଜର ରଖୁଥିଲୁ। ଭାଲୁ ସମ୍ବନ୍ଧରେ ବାଜେ କଥା ଶୁଣିଶୁଣି ଭଗବାନ ଭାଇଙ୍କର ବାମ ପାଖ ଛାତିର ଦୁକୁଦୁକିଟା ଭୟାତୁର ହୋଇ ପଡୁଥିଲା। ମାତ୍ର ତାଙ୍କ ହାତରେ ଏକ ଶାଳବାଡ଼ି ଥିଲା। ସେଇଟାକୁ ବାଡ଼େଇ ସେ ବାହାସ୍ଫୋଟ ମାରିବାରେ ଆଦୌ ହେଳା କରୁନଥିଲେ।

ଆଜି ରାତିର ପରିଚୟ ପର୍ବରେ ଦୁଇଜଣ ନୂଆ ବନ୍ଧୁ ଯୋଗ ଦେଇଥିଲେ, ସ୍ୱର୍ଣ୍ଣ ଅପା ସକାଳେ ପହଞ୍ଚିଥିଲେ ଏବଂ ବ୍ରହ୍ମପୁରରୁ କେଦାର ଭାଇ ସନ୍ଧ୍ୟାବେଳେ ପହଞ୍ଚିଲେ।

ରାତିର ମୁକ୍ତ ଆଲୋଚନାରେ ଶ୍ରୀମାଙ୍କ ପ୍ରଶ୍ନୋତ୍ତର ପୁସ୍ତକ ନବମ ଖଣ୍ଡରୁ ଆଧ୍ୟାତ୍ମିକ ଶକ୍ତି ସମ୍ବନ୍ଧରେ ଆଲୋଚନା କରୁକରୁ ଆମ ଭିତରୁ ଅଧିକାଂଶ ପୂରା ଚେଙ୍ଗା ହୋଇ ଉଠୁଥିଲେ ଏବଂ ଜଣେ ଦି'ଜଣ କର୍ମକ୍ଲାନ୍ତ ଚକ୍ଷୁ ଯୁଗଳରେ ନିଦ୍ରାସକ୍ତ ହୋଇ ଝୁମି ରହୁଥିଲେ।

ଶୀତ ପ୍ରକୋପ ନସହିବାପାଇଁ ସମସ୍ତେ ମଫଲର୍ ଓ ସ୍ୱେଟର ପରିଧାନ ପୂର୍ବକ ନିଜ ନିଜ ବିଛଣାକୁ ଚାଲିଗଲେ। ଆମ ରୁମ୍‌ରେ ଜାଗା ନଥିବାରୁ

ପ୍ରାକୃତିକ ରୁମ ହିଟରର (ମାଟି ପଲମରେ ନିଆଁ) ବ୍ୟବସ୍ଥା କରାହୋଇ ପାରିନଥିଲା।

ସବୁ ବ୍ୟବସ୍ଥାସତ୍ତ୍ୱେ ଶୀତର ପ୍ରକୋପ ଜାରି ରହିଲା। ତେଣୁ ରାତି ନପାହୁଣୁ ନିଦ୍ରାଦେବୀ ଆମକୁ ମୁକ୍ତ କରି ଦେଲେ। କିଛି ସମୟ ପରେ ଶିବିର ଘଣ୍ଟି ବାଜିଲା। ଘଣ୍ଟି ବାଜିବା ଆଗରୁ ଅନେକ ଅଗ୍ନିକୁଣ୍ଡକୁ ସଞ୍ଜିବନୀ ଦେଇ ତା' ଚାରିପାଖରେ ଘେରି ବସି ଯାଇଥିଲେ। ପ୍ରାଥମିକ ନିତ୍ୟକର୍ମ ସମାପନ କରି ଶିବିରାର୍ଥୀମାନେ କର୍ମକ୍ଷେତ୍ରରେ ହାଜର ହୋଇଗଲେ।

ଏଠାରେ ସୂର୍ଯ୍ୟଙ୍କୁ ଠିକ୍ ସମୟରେ ଦେଖିବା ଭାରି କଷ୍ଟକର ବ୍ୟାପାର। କାରଣ ପଥୁରିଆ ପାହାଡ଼ ଚୁଡ଼ାକୁ ପାଦେପାଦେ ଉଠୁଉଠୁ ମହାପୁରୁଙ୍କୁ ଘଣ୍ଟାଏ ଲାଗିଯାଏ। ତାପରେ ମହାପୁରୁଙ୍କ କରୁଣା ରଶ୍ମି ଆମ ଶରୀରରେ ପଡ଼େ ଏବଂ ଆମେ ଚେଙ୍ଗା ହୋଇଉଠୁ। ମାଟି ଖୋଳା ଓ ମାଟି ବୁହା କାମରେ ତୀବ୍ରତା ଆସିଯାଏ। ଖାଲି ଗାଣ୍ଟୁଆମାନେ ନିଜ ନିଜ ଜାଗାରେ ପହଞ୍ଚିବାପାଇଁ ମାଡ଼ ମରାମରି ହୁଅନ୍ତି। ମଝିରେ ବାମ୍ପ ବାହାରୁଥିବା ଗରମ ଗରମ ନାଲି ଚାହା ସାଙ୍ଗକୁ ମୁଢ଼ି ଆସିଯାଏ। ଏହି ସମୟରେ ସମସ୍ତେ ଗୁଲିଗପ ସହ ଟହଲ ମାରି ସମ୍ପର୍କର ନିବିଡ଼ତାକୁ ମନେପକାଇ ଦିଅନ୍ତି।

× × × ×

ଆଜି ଶିବିରର ତୃତୀୟ ଦିନ। ଗତ ଦୁଇଦିନ ପରି ପୋଖରୀ ଖୋଳା କାମ ଓ ଜଳଖିଆ ପର୍ବ ସାରି ଆମେ ସ୍ୱାଧ୍ୟାୟପାଇଁ ଅଗଣାରେ ଠିକ୍ ସମୟରେ ବସି ପଡ଼ିଲୁ।

ଈଶୋପନିଷଦର ଚତୁର୍ଥ ଓ ପଞ୍ଚମ ମନ୍ତ୍ରଦୁଇଟିକୁ ଚିତ୍ତଭାଇଙ୍କ ସାଙ୍ଗରେ ମିଶି ଆବୃତ୍ତି କଲୁ। ତା'ପରେ ଆଲୋଚନା ଆରମ୍ଭ ହେଲା।



ଚତୁର୍ଥ ମନ୍ତ୍ର -

ଅନେଜଦେକଂ ମନସୋ ଜବୀୟୋ
ନୈନଦ୍ଦେବା ଆପ୍ନୁବନ୍‌ପୂର୍ବମର୍ଷତ୍ ।
ତଦ୍ଧାବତୋଽନ୍ୟାନତ୍ୟେତି
ତିଷ୍ଠତ୍ତସ୍ମିନ୍ନପୋ ମାତରିଶ୍ୱା ଦଧାତି ॥

ମୁଁ ଆଲୋଚନାରୁ ମନ୍ତ୍ରଟିର ଅର୍ଥ ଏପରି ବୁଝିଲି ।

ସେ ସ୍ଥିର ଥାଆନ୍ତି, କିନ୍ତୁ ମନଠାରୁ ତାଙ୍କର ଗତି ଦ୍ରୁତତର। ସେ ଏପରି ବେଗରେ ଧାବନ କରନ୍ତି ଯେ ଦେବତାମାନେ ତାଙ୍କୁ ଗୋଡ଼ାଇ ଆଗକୁ ଯାଇ ପାରନ୍ତି ନାହିଁ। ଗୋଟିଏ ଜାଗାରେ ସ୍ଥିର ରହି ବି ସେ ଅନ୍ୟମାନଙ୍କଠାରୁ ବହୁତ ଆଗକୁ ଅତିକ୍ରମ କରି ଯାଇଥାନ୍ତି। ସେ ଜଗତର ସକଳ କାର୍ଯ୍ୟକୁ ପରିପୁଷ୍ଟ କରିବାରେ ସହାୟକ ହୁଅନ୍ତି।

ପଞ୍ଚମ ମନ୍ତ୍ର -

ତଦେଜତି ତନ୍ନୈଜତି ତଦ୍‌ଦୂରେ ତଦ୍ୱନ୍ତିକେ।
ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ ॥

ମୁଁ ଏହିପରି ବୁଝିଲି -

ସିଏ (ପରମବ୍ରହ୍ମ) ଗତି କରନ୍ତି ଓ ଗତି କରନ୍ତି ନାହିଁ, ଦୂରରେ ଅଛନ୍ତି ଏବଂ ନିକଟରେ ଅଛନ୍ତି, ସେ ସବୁରି ଭିତରେ ଅଛନ୍ତି ଏବଂ ସବୁରି ବାହାରେ ମଧ୍ୟ ଅଛନ୍ତି।

ଚତୁର୍ଥ ଓ ପଞ୍ଚମ, ଦୁଇଟି ମନ୍ତ୍ରକୁ ଏକାଠି ରଖି ଆଲୋଚନା ଜାରି ରହିଲା। ଫଳରେ ଆମକୁ ଭଲ ଭାବରେ ମନନ କରିବାକୁ ସୁବିଧା ହେଲା।

ମୁଁ ବିଜ୍ଞାନଦ୍ୱାରା ଆବିଷ୍କୃତ ଅଦୃଶ୍ୟ ଶକ୍ତିଗୁଡିକର ଉଦାହରଣ ଦେଇ ମନ୍ତ୍ର ଦୁଇଟିକୁ ବୁଝାଇବାକୁ ଏଠାରେ ଚେଷ୍ଟା କରିଛି।

ଆମ ଭିତରେ ପରମବ୍ରହ୍ମଙ୍କ ଅଂଶ ସ୍ୱରୂପ ଜୀବାତ୍ମା ଅପ୍ରକଟିତ ହୋଇ ରହିଛନ୍ତି। ତାଙ୍କ ପାଖରେ ସେଇ ପରମବ୍ରହ୍ମଙ୍କର ରହସ୍ୟମୟ ଚେତନ ଶକ୍ତି ରହିଛି। ଉପରୋକ୍ତ ଦୁଇଟି ମନ୍ତ୍ରରେ ବର୍ଣ୍ଣନା କରାଯାଇଥିବା ଗୁଣ ତଥା ଶକ୍ତିସକଳ ସେଇ ଆତ୍ମ ପୁରୁଷଙ୍କ ପାଖରେ ମହଜୁଦ ରହିଛି।

ଅନେକ ଅଦୃଶ୍ୟ ଶକ୍ତିଙ୍କ ଭିତରୁ ବିଦ୍ୟୁତ୍ ଶକ୍ତି ଗୋଟିଏ। ପୃଥିବୀ ସୃଷ୍ଟି ହେବା ଦିନଠାରୁ ବିଦ୍ୟୁତ୍ ଶକ୍ତି ବିରାଜମାନ। ମାତ୍ର ଏହାର ସ୍ଥିତିକୁ ଆବିଷ୍କାର କରିବାପାଇଁ ନିୟୁତ ନିୟୁତ ବର୍ଷ ବିତିଗଲା। ଆଦିମ କାଳରୁ ମେଘ ବାଦଲରେ ବିଜୁଳି ମାରିବାର ଝଲକକୁ ସେ ଦୈବୀ ବାଣ ବୋଲି ଠଉରାଇଥିଲା।

ଏଇ ମାତ୍ର ୩୦୦ ବର୍ଷ ଭିତରେ ବିଦ୍ୟୁତ୍ ଶକ୍ତି ମଣିଷର ବ୍ୟବହାରରେ ଆସିପାରିବ ବୋଲି ବୈଜ୍ଞାନିକମାନେ ଆଭାସ ପାଇପାରିଲେ। ୧୮୩୧ ମସିହାରେ ମାଇକେଲ ଫାରାଡ଼େ ଏକ ବିଦ୍ୟୁତ୍ ଚାଳିତ ଡାଇନାମୋ ତିଆରି କଲେ ଯାହାକି ନିରନ୍ତର ବିଦ୍ୟୁତ୍ ଶକ୍ତି ସୃଷ୍ଟି କରିବାରେ ସକ୍ଷମ ହେଲା। ଏହାଦ୍ୱାରା ମଣିଷ ବିଦ୍ୟୁତ୍ ଶକ୍ତିକୁ ନିଜର ବିଭିନ୍ନ କାମରେ ଲଗାଇ ପାରିବ ବୋଲି ଦୃଢ଼ ପ୍ରତ୍ୟୟଟି ପାଇ ପାରିଲା।

ବିଦ୍ୟୁତ୍ ଶକ୍ତିକୁ ଆମେ ଦେଖିପାରୁନୁ, ମାତ୍ର ଅତି ନିକଟରୁ ଅନୁଭବ କରି ପାରୁଛୁ। ବିଦ୍ୟୁତ୍ ଶକ୍ତି ବିନା ଜୀବନ ନିର୍ବାହ କରିବା ଏବେ ଅସମ୍ଭବ ପରି ମନେ ହେଉଛି। ବିଦ୍ୟୁତ୍ ଶକ୍ତିପାଇଁ ମୁଣ୍ଡ ଉପରେ ଫ୍ୟାନ ବୁଲୁଛି, ରାତିରେ ଆଲୁଅ ଜଳୁଛି, ଗରମରୁ ରକ୍ଷା ପାଇବାପାଇଁ ଏ.ସି. ଲାଗୁଛି, ଟିଭି ପରଦାରେ ଦୁନିଆଟାକୁ ଘରେ ବସି ଦେଖି ପାରୁଛୁ, ରୋଷେଇ ଘରେ ଗ୍ରାଇଣ୍ଡର, ଇଣ୍ଡକ୍ସନ୍ କୁକର ଯୋଗୁଁ ରୋଷେଇ କାମ ଖୁବ୍ ସହଜ ହୋଇ ପାରୁଛି, ଘରେ ରେଫ୍ରିଜରେଟର ଦ୍ୱାରା ଖାଦ୍ୟକୁ ସତେଜ ଓ ସଂରକ୍ଷିତ କରିବା ସହଜ ହୋଇ ପାରିଛି। ତା'ଛଡ଼ା ୱାସିଂମେସିନ୍, କମ୍ପ୍ୟୁଟର୍,

ମାଇକ୍ରୋ ଓଭନ୍ ଏହିପରି ଅନେକ ଯନ୍ତ୍ରପାତି ଜୀବନକୁ ସରସ ଓ ଚଞ୍ଚଳ କରି ପାରିଛି। ଟ୍ରେନ୍ ଚଳାଚଳ ଓ ଅନେକ ଗମନାଗମନର ଯାନବାହନ ବିଦ୍ୟୁତ୍ ଚାଳିତ। ଜୀବନରକ୍ଷାକାରୀ ଅନେକ ଡାକ୍ତରୀ ଯନ୍ତ୍ରପାତି ଆମର କ୍ଷଣ କ୍ଷଣକେ ଅତ୍ୟାବଶ୍ୟକ ହୋଇ ପଡ଼ିଛନ୍ତି।

ଏହି ବିଦ୍ୟୁତ୍ ଶକ୍ତି ସ୍ଥିତିଜ ଶକ୍ତି ଭାବରେ ଗଚ୍ଛିତ ହୋଇ ରହୁଛି, ପୁନଶ୍ଚ ଅତି ଦ୍ରୁତ ଗତିରେ ଦୂରଦୂରାନ୍ତରକୁ ଧାବନ କରୁଛି। ବିଦ୍ୟୁତ୍ ଶକ୍ତି ପରି ତରଙ୍ଗ ଓ ଅନ୍ୟାନ୍ୟ ଶକ୍ତିକୁ ମଣିଷ କରାୟତ୍ତ କରି ନିଜ ବ୍ୟବହାରରେ ଲଗାଇ ପାରିଛି।

ଯଦି ବିଦ୍ୟୁତ୍ ଶକ୍ତିଦ୍ୱାରା ଏତେ ଅଦ୍ଭୁତ କାର୍ଯ୍ୟ ସମ୍ଭବ ହୋଇପାରୁଛି, ତେବେ ପରମବ୍ରହ୍ମଙ୍କ ଅଂଶ ସ୍ୱରୂପ ଆତ୍ମପୁରୁଷଙ୍କ ଶକ୍ତି ବିଷୟରେ କ'ଣ ବା ଆମେ ବର୍ଣ୍ଣନା କରି କହିପାରିବା ସେ ସର୍ବ ବିଦ୍ୟମାନ, ଗତି ଅଗତିର ଚେତନ ଶକ୍ତି।

ଉପର ଓଳି ବର୍ଷା ପଡ଼ିବାରୁ କାମ ବନ୍ଦ ରହିଲା। ବର୍ଷା ଛାଡ଼ିଲା ପରେ ସମତଳ ଭୂମିରେ ବୁଲାବୁଲି କଲୁ। ପ୍ରକୃତିର ମହନୀୟ ସୌନ୍ଦର୍ଯ୍ୟରେ ଶୀତୁଆ ପବନର ପ୍ରଭାବ କମି ଯାଉଥିଲା। ସନ୍ଧ୍ୟା ବେଳର ଚୁଡ଼ାଭଜା ଓ ଗରମ ନାଲି ଚାହା ମନରେ ଫୁର୍ତ୍ତି ଭରିଦେଲା। ସାନ୍ଧ୍ୟ ଆଲୋଚନା ବାରଣ୍ଡାରେ ହେଲା, କାରଣ ଅଗଣା ଓଦା ହୋଇ ରହିଥିଲା। ଅଜୟ ଭାଇ ଆଜି ଶ୍ରୀଅରବିନ୍ଦଙ୍କ ରଚିତ ଆମନ୍ତ୍ରଣ (Invitation) କବିତାଟି ଆବୃତ୍ତି କଲେ। ତାପରେ ଆମେ ଶ୍ରୀମାଙ୍କ ପ୍ରଶ୍ନୋତ୍ତର ପୁସ୍ତକରୁ ଅତିମାନସ ବିପ୍ଳବ ସମ୍ବନ୍ଧରେ ପଢ଼ି ଆଲୋଚନା କଲୁ। ଆଲୋଚନା ବେଳେ ଭଗବାନ ଭାଇଙ୍କ ମୁଣ୍ଡ ଟିକିଏ ଚକ୍କର ମାରିଲା। ତେଣୁ ସାଂସ୍କୃତିକ କାର୍ଯ୍ୟକ୍ରମ ଟିକିଏ ମାଡ଼ ଖାଇଲା, ମାତ୍ର ବିନିଦା ଗାଁରୁ ଆସିଥିବା ଭାଇମାନେ କାର୍ଯ୍ୟକ୍ରମକୁ ବେଶ୍

ଆଗେଇ ନେଲେ । ଚିତ୍ତଭାଇ ଗାଇଲେ- "ଏଇ ମନ ସିନା ଚତୁର୍ଦ୍ଧା ମୂରତିରେ ମୁଢ଼ମତି...." । ଏହା ସମସ୍ତଙ୍କୁ ଚେଙ୍ଗା କରି ରଖିଲା । ଚିତ୍ତଭାଇଙ୍କ କଣ୍ଠ ଟିକିଏ ଘେଁ ଘେଁ ହେବାରୁ ମଝିରେ ଦବି ଗଲେ, ମାତ୍ର ପୁଣି ଗୀତର ସ୍ୱରକୁ ଉଠାଇ ଧରିଲେ ।

ରାତ୍ରି ଭୋଜନ ସାରି କୋଠରୀ ଭିତରକୁ ପ୍ରବେଶ କଲାବେଳକୁ ଆକାଶରେ ମେଘର ବାଦଲ ସବୁ ବସା ବାନ୍ଧୁଥିଲେ । ପରଦିନ କ'ଣ ହେବ; ଏହି ଆଶଙ୍କାରେ ସମସ୍ତେ ନିଦ୍ରା ଦେବୀଙ୍କୁ ଆରାଧନା କରି ଶୀଘ୍ର ଶଯ୍ୟାଶାୟୀ ହେଲେ ।

ସନ୍ଧ୍ୟାବେଳର ବର୍ଷାଜନିତ ଶୀତର ପ୍ରକୋପ ରାତିରେ ଅନ୍ତ ହେଲା ନାହିଁ । ମୁଁ ଯେତେବେଳେ ହଠାତ୍ ନିଦରୁ ଉଠି ପଡ଼ିଲି, ସେତେବେଳେ ଅନ୍ଧାର କିଟିମିଟି ହୋଇ ମୁଲକଟିକୁ ଆବୃତ କରି ରଖିଥିଲା । ନୀରବତାର ଗମ୍ଭୀରି ଭିତରେ ସବୁକିଛି ଥିଲା ନିସ୍ତବ୍ଧ, କେବଳ କେତେଜଣଙ୍କର ଘୁଙ୍ଗୁଡ଼ି ସାମାନ୍ୟ ହଲଚଲ କରୁଥିଲା ନିଭୃତ ଅନ୍ଧକାରର ଓଢ଼ଣୀଟି ଉପରେ । ଘୁଙ୍ଗୁଡ଼ି ଆଗରେ ମୁଁ ଫୁସୁଫୁସୁ କରି କହୁଥିବା ଶବ୍ଦମାନଙ୍କର ବିଶେଷ ଅର୍ଥ ପ୍ରକାଶିତ ହେଉନଥିଲା ।

ମୁଁ କୋଠରି ବାହାରକୁ ଚାଲିଆସିଲି । ସେଠାରେ କେବଳ ନୀରବତା ମୋ ସାଙ୍ଗରେ କଥା ହୋଇଥିଲେ । ମୁଁ ନିରାପଦ ଓ ସହଜ ଥିଲି, କାରଣ ଭୂତ ପ୍ରେତ ମୋ ଆଗରେ ନାଚୁ ନଥିଲେ । ଏହା ସମ୍ଭବ ହୋଇଥିଲା, କାରଣ ବହୁ ଦିନରୁ ମୋଠାରୁ ଭୂତ ପ୍ରେତଙ୍କ ଭୟ ବିଦାୟ ନେଇ ସାରିଥିଲା ।

ମୁଁ ମନର ଉର୍ଦ୍ଧ୍ୱ ରାଜ୍ୟରେ ଯେତିକି ଯେତିକି ଆଗକୁ ପାଦ ପକାଇଲି, ଅନ୍ଧକାର ମୋତେ ସେତିକି ସେତିକି ବାଟ ଛାଡ଼ି ଦେଉଥିଲା । ତାଲା ପଡ଼ିଥିବା କବାଟଗୁଡ଼ିକ ଗୋଟିକ ପରେ ଗୋଟିଏ ଖୋଲିବାକୁ ଲାଗିଲେ ।



ଏକ କ୍ଷୀଣ ଆଲୋକର ରଶ୍ମି, ସୁନ୍ଦରୀ ତରୁଣୀ ପରି ଲଜ୍ଜା ବଦନରେ ମୋ' ଆଖିରେ ଆଖି ମିଶାଇଦେଲା । ମୁଁ ଅନୁଭବ କଲି ମୋ' ହୃଦୟକୁ ଏକ ବିଶ୍ୱାସ କୋଳାଗ୍ରତ କଲା ଏବଂ ମୋତେ ଚୁମ୍ବନରେ ବୁଡ଼ାଇ ଦେଲା ।

ଏହାପରେ ଦେଖିଲି ପୁରୁଷ ନାରୀ, ଯୁବକ ଯୁବତୀ, ଆବାଳ ବୃଦ୍ଧ ବନିତା ସମସ୍ତେ ଏକ ଅଗ୍ର ଦୃଷ୍ଟିରେ ସଂଯୁକ୍ତ ହୋଇ ଆଗକୁ ମାଡ଼ି ଚାଲିଛନ୍ତି ।

ସେହି କ୍ଷୀଣ ଆଲୋକର ଧାରା ସେମାନଙ୍କ ମୁଖ ମଣ୍ଡଳକୁ ଉଦ୍ଭାସିତ କରୁଥିଲା । ନୀରବତାର ପ୍ରତିଧ୍ୱନି ବଜାୟ ରହିଥିଲା । କଥା କହିବାକୁ ମନା ହୋଇଥିଲା । ନୀରବତା ନୂତନ ଶବ୍ଦପୁଞ୍ଜ ସୃଷ୍ଟି କରୁଥିଲା । ସୂର୍ଯ୍ୟ ଦେଖାଦେବା ପରେ ରାତ୍ରିର ଆଲୋକ ରଶ୍ମି ଅଦୃଶ୍ୟ ହୋଇଗଲେ । ମାତ୍ର ସକଳ ଶବ୍ଦପୁଞ୍ଜ ତିଷ୍ଠି ରହିଲେ ଏବଂ ସେମାନଙ୍କୁ ମପାଯାଇ ପାରିଲା । ଏହିପରି ଭାବରେ





ନୂତନ ଜଗତଟି ସମସ୍ତ ଦ୍ୱନ୍ଦ୍ୱରୁ ମୁକ୍ତି ପାଇଲା ।

ସକାଳ ୫ଟ୍ ୫ଟ୍ ପାହିଲା ବେଳକୁ ଶିବିରର ଘଣ୍ଟି ବାଜିଉଠିଲା । ସେତେବେଳକୁ ଶିବିରାର୍ଥୀମାନେ ଅଗ୍ନିକୁଣ୍ଡର ଉତ୍ତାପ ନିକଟରେ ସମର୍ପଣ କରି ଠିଆ ହୋଇ ସାରିଥିଲେ । ତାପରେ ସମସ୍ତେ ନିତ୍ୟକର୍ମ ସାରି କର୍ମ କ୍ଷେତ୍ରରେ ଉଭା ହୋଇଗଲେ ।

ଆଜି ଚତୁର୍ଥ ଦିନ । ସକାଳର କାମସାରି ଆମେ ଗାଧୁଆ ପାଧୁଆ ସାରିଲୁ । ଜଳଖିଆ ଖାଇ ସୂର୍ଯ୍ୟଦୀପ୍ତ ଅଗଣାରେ ଦରି ପକାଇ ଅର୍ଦ୍ଧଗୋଲାକାରରେ ଉପବେଶନ କଲୁ । ପ୍ରାର୍ଥନାଟିଏ ବୋଲା ହେଲା ଓ ଗତକାଲିର ମନ୍ତ୍ର ଉପରେ ଚିତ୍ତଭାଇ ସାମାନ୍ୟ ସ୍ମରଣ କରାଇ ପରବର୍ତ୍ତୀ ଦୁଇଟିମନ୍ତ୍ର ଉପରେ ମନୋନିବେଶ କରାଇଲେ ।

ମୁଁ ଏହି ମନ୍ତ୍ରଦୁଇଟିର ଆଲୋଚନାକୁ ଏଠାରେ ଉପସ୍ଥାପନ କରିବା ପୂର୍ବରୁ ଏହି ମନ୍ତ୍ରକୁ ନେଇ ମୋ ଭିତରେ ଯେଉଁ ଚିନ୍ତନ ଉପୁଜିଲା, ତାହା ବର୍ଣ୍ଣନା କରୁଛି ।

ବ୍ରହ୍ମନ୍ - ପରମ୍ବ୍ରହ୍ମ ଓ ସଂସାର ମଧ୍ୟରେ ଏକତ୍ୱ।

ପରମେଶ୍ୱର (The Lord) ଏବଂ ସଂସାର (World) ପରସ୍ପରଠାରୁ ପୃଥକ୍ ଜଣାପଡ଼ିଲେ ବି ସେମାନେ ପ୍ରକୃତରେ ଏକ ହିଁ ବ୍ରହ୍ମନ୍।

ସେ ସ୍ଥିର - ଗତିହୀନ।

ପରମେଶ୍ୱର (God) ସ୍ଥିର ଏବଂ ଶାଶ୍ୱତ ସତ୍ୟ। କେବଳ ସେ ହିଁ ସର୍ବତ୍ର ଅଛନ୍ତି। ଏ ସୃଷ୍ଟିରେ ତାଙ୍କ ବିନା ଆନ କିଛି ନାହିଁ, ସବୁ ଅସ୍ତିତ୍ୱ ଓ ଅନାସ୍ତିତ୍ୱ ହେଉଛନ୍ତି ସେ ନିଜେ। ସେ ସ୍ଥିର, ଗତିହୀନ। କାରଣ ଗତି ଥିଲେ ସ୍ଥାନ ଓ କାଳର ପରିବର୍ତ୍ତନ ରହିବ। ସେ ନିଜେ ଚିରନ୍ତନ ଅବିନଶ୍ୱର ଏବଂ ଏଥିପାଇଁ ତାଙ୍କର ବୃଦ୍ଧି ହୁଏ ନାହିଁ କିମ୍ବା ତାଙ୍କର କ୍ଷୟ ଘଟେ ନାହିଁ। ସେ ଶାଶ୍ୱତ ଭାବରେ ଯାହା କିଛି ଅଛି, ଆଉ ଯାହାକିଛି ହୋଇପାରେ, ସେସବୁକୁ ନିଜ ଭିତରେ ଧରି ରଖିଛନ୍ତି। କରଣୀୟ ସମ୍ବନ୍ଧ ଓ ଆପେକ୍ଷିକତାଠାରୁ ସେ ବହୁ ଊର୍ଦ୍ଧ୍ୱରେ।

ଆସନ୍ତୁ ବିଚାର କରିବା ଗତି ସମ୍ବନ୍ଧରେ। ଆମେ ଗତି ବିଷୟରେ କେତେ ବୁଝି ପାରିଛେ ? ବିଶ୍ୱବ୍ରହ୍ମାଣ୍ଡରେ ଗ୍ରହ, ସୂର୍ଯ୍ୟ, ନକ୍ଷତ୍ର ଭର୍ତ୍ତି ହୋଇ ରହିଛନ୍ତି। ଓଡ଼ିଆ ଭାଗବତରେ ଲେଖାଯାଇଛି "ବ୍ରହ୍ମାଣ୍ଡ ମାଳ ମାଳ ହୋଇ, ତୋ ଲୋମକୂପେ ବିରାଜଇ"। ଅଳ୍ପ କେତେକ ଗ୍ରହ ନକ୍ଷତ୍ରକୁ ଆମେ ଦେଖି ପାରୁଛେ, ମାତ୍ର ଆହୁରି ଅନେକ ଆମ ସାଧ ବାହାରେ। ଆମେ ଇଚ୍ଛା କଲାମାତ୍ରେ ଆମ ମନ ସୂର୍ଯ୍ୟଙ୍କ ପାଖରେ ଶହେ ଥର ପହଞ୍ଚିବାରେ କିଛି ଅସୁବିଧା ନାହିଁ। ମାତ୍ର ସୂର୍ଯ୍ୟାଲୋକ ଆମ ପାଖରେ ପହଞ୍ଚିବାକୁ ଆଠ ମିନିଟ୍ କୋଡ଼ିଏ ସେକେଣ୍ଡ ଲାଗିଥାଏ। ସୂର୍ଯ୍ୟାଲୋକ ତିନି ଲକ୍ଷ କିଲୋମିଟର ବେଗରେ ଗତି କରିଥାଏ। ଅନେକ ଗାଲାକ୍ସି ଅଛନ୍ତି, ଯେଉଁଠି ଏହି ଗତି ଆହୁରି କ୍ଷିପ୍ରତର ବୋଲି ଜ୍ୟୋତିର୍ବିଜ୍ଞାନୀମାନେ କହୁଛନ୍ତି। ଆଲୋକ ଏତେ କ୍ଷିପ୍ର ଗତିଧାରୀ ହୋଇ ମଧ୍ୟ ସୂର୍ଯ୍ୟଙ୍କଠାରୁ ଆସି ଆମ ପାଖରେ ପହଞ୍ଚିବାକୁ

ଆଠ ମିନିଟ୍‌ରୁ ଅଧିକ ସମୟ ନେଉଛି, ମାତ୍ର ମନ ତ ନିମିଷକେ ସୂର୍ଯ୍ୟଙ୍କ ନିକଟରେ ପହଞ୍ଚିଯାଉଛି ।

ପରମବ୍ରହ୍ମ ଯିଏ ସ୍ଥିର ତଥା ଗତିହୀନ, ସେ ମନଠାରୁ କ୍ଷିପ୍ର ଗତିରେ ଧାବନ କରି ପାରନ୍ତି । ଏପରିକି ଦେବତାମାନେ ତାଙ୍କୁ ଅନୁସରଣ କରି ବହୁ ପଛରେ ପଡ଼ିଯାନ୍ତି । ଏଭଳି ଅଦ୍ଭୁତ କ୍ଷିପ୍ରଗତିଧାରୀ ପରମ ସତ୍ତାଙ୍କ ଚଳନକୁ ଆମେ ମନ ଦେଇ କିପରି ଅବଧାରଣ କରିପାରିବା !

× × × ×

ଏଭଳି ଗତି ସମ୍ବନ୍ଧରେ ଚିନ୍ତନଟି ସମୃଦ୍ଧ ହୋଇ ରହିଥିଲା ବେଳେ, ଏକ ପୁରୁଣା ସ୍ମୃତି ମୁଣ୍ଡକୁ କବ୍ଜା କରି ସାରିଥିଲା, ତାହା ନିମ୍ନୋକ୍ତ ଲେଖା ମାଧ୍ୟମରେ ଏଠାରେ ପ୍ରକାଶ କରୁଛି । ଦୁଇ ପ୍ରଦେଶ ଭିତରେ ଅନେକ ଈର୍ଷା ଓ ହିଂସା ଲାଗି ରହିଥାଏ । କିଏ ଉପରେ ଓ କିଏ ନୀଚରେ, ଏହାକୁ ନେଇ ବାଦବିବାଦ ଭରି ରହିଥାଏ ଓ କୋର୍ଟରେ ଅସମାହିତ ହୋଇ ରହିଥାଏ ଅନେକ ଦଲିଲ କାଗଜର ପୃଷ୍ଠା । ରାଜ୍ୟର ସୀମାରେଖା ପାଖାପାଖି ଅରଣ୍ୟ ଭୂମିଟି ଉପରେ ଲମ୍ବିଯାଇଛି ସର୍ପିଳ ରାସ୍ତାଟି ଏ ରାଜ୍ୟରୁ ସେ ରାଜ୍ୟ ଭିତରକୁ ।

ରାସ୍ତା ଉପରେ ଗମନ କଲାବେଳେ ଗ୍ରୀଷ୍ମର ରୌଦ୍ରତାପ ଶରୀରରେ କ୍ଳାନ୍ତି ଭରି ଦେଇଗଲା । ସାରା ଶରୀରରୁ ଗମ୍‌ଗମ୍ ସ୍ୱେଦ ନିର୍ଗତ ହେଉଥିଲା । ପଥପ୍ରାନ୍ତର ବରଗଛଟି କେତେ ଶହ ବର୍ଷର ଆୟୁଷ ଧରି ଦମ୍ଭର ସହ ସ୍ଥିର ଭାବରେ ଠିଆ ହୋଇଛି । ଚାରିଆଡ଼କୁ ଶାଖା ପ୍ରଶାଖା ମେଲେଇ ଦେଇଛି ବରଗଛ ମୂଳେ ଛାଇ ଆଉ ଛାଇ । ପତ୍ର ଗହଳି ଦେଇ ବୋହି ଆସୁଥିବା ପବନ ନିଜର ଗରମକୁ ପତ୍ରପୁଞ୍ଜରେ ସମର୍ପଣ କରି ଶୀତଳ ହୋଇଯାଉଛି ଏବଂ ଆଶ୍ରୟୀ ପଥଚାରୀମାନଙ୍କୁ ବିଶ୍ରାମ ଯୋଗାଇ ଦେଉଛି । ବରଗଛରେ ଚଢ଼େଇମାନେ ବସି କିଚିରି ମିଚିରି ହେଉଛନ୍ତି ।

ସ୍ୱେଦସିକ୍ତ କ୍ଳାନ୍ତ ଶରୀରଟିକୁ ଧରି ବରଗଛମୂଳରେ ପହଞ୍ଚିଲି । ସୁଶୀତଳ ପବନର ସ୍ପର୍ଶ ପାଇବା ଆଶାରେ ବରଗଛ ଛାଇରେ ଭରି ରହିଥିଲା ଅନ୍ତରର ପରଶ। ଗଛମୂଳରେ ପ୍ରସ୍ତର ପୃଷ୍ଠଟି ଅପେକ୍ଷା କରି ରହିଥିଲା। ପ୍ରସ୍ତରଟିକୁ ବାହାରୁ ଦେଖି ଜଣେ ଅଚେତନ ବସ୍ତୁଟିଏ ବୋଲି କହିପାରେ, ମାତ୍ର ମୋ'ପାଇଁ ଏହା ଆଦୌ ସେପରି ନଥିଲା। ପ୍ରସ୍ତରର ହୃଦୟ କନ୍ଦରଟି ମୋତେ ପରିଷ୍କାର ଦିଶି ଯାଉଥିଲା। ମୁଁ ବିନମ୍ରତାର ସହ ପ୍ରସ୍ତର ପୃଷ୍ଠ ଉପରେ ଉପବେଶନ କଲି ଓ କିଛି ସମୟପରେ ପ୍ରସ୍ତର ପୃଷ୍ଠ ଉପରେ ମୋ' ପୃଷ୍ଠକୁ ଲଦି ଦେଇ ଲମ୍ବ ହୋଇ ଗଡ଼ିପଡ଼ିଲି । ମନ ଧୀରେଧୀରେ ଶାନ୍ତ ତଥା ସ୍ନିଗ୍ଧ ହେବାକୁ ଲାଗିଲା। ବରଗଛର ଭିତିରି କଥା ମୋତେ ଦୃଶ୍ୟମାନ ହେଲା। ବରଫଳଗୁଡ଼ିକ ପାଚି ରଙ୍ଗୀନ ଦେଖାଯାଉଥିଲେ ଏବଂ ଖୁବ୍ ମନଲୋଭା ଥିଲେ। ଚଢ଼େଇମାନେ ଥଣ୍ଟ ଲଗାଇ ବରଫଳ ଖାଇବାପାଇଁ ଉଦ୍ୟତ ହେଉଥିଲେ।

ଭୂଇଁରେ ଅନେକ ପାଚିଲା ଫଳ ଖସି ପଡୁଥିଲେ। ଗୋଟିଏ ବରଫଳ ଭିତରେ ସୋରିଷ ପ୍ରାୟ କ୍ଷୁଦ୍ର କ୍ଷୁଦ୍ର ଅନେକ ମଞ୍ଜିର ସମାହାର। ଏତେ ଫଳ ଓ ତା' ସାଙ୍ଗକୁ ଏତେ ମଞ୍ଜି କଥା ଭାବିଲାବେଳେ, ମୁଁ ବିସ୍ମୟରେ ବୁଡ଼ିଗଲି ଏବଂ ଏକ ଅତୀନ୍ଦ୍ରିୟ ରାଜ୍ୟରେ ଥିଲା ଭଳି ଅନୁଭବ କଲି। ଭାବିଲି ବରଗଛଟି ବରଫଳଗୁଡିକୁ ଧରିଛି ନା ବରଫଳମାନେ ବରଗଛକୁ ଧରିଛନ୍ତି। ମୁଁ ସମୟର ସ୍ରୋତରେ ଆଗକୁ ଆଗକୁ ଗମନ କଲି। ମୋତେ ଦେଖାଗଲା ବରଫଳରୁ ବରମଞ୍ଜି ଗୁଡ଼ିକ ବାହାରି ଆସି ଆଗରେ ହଜାର ହଜାର ବରଗଛରେ ଶାଖାପ୍ରଶାଖା ମେଲାଇ ଠିଆ ହୋଇଛନ୍ତି। ସୃଷ୍ଟିର ଏହି ସତ୍ୟଟି ମୋପାଇଁ ସଦା ଉନ୍ମୋଚିତ ହୋଇ ରହିଥିଲା। ମାତ୍ର, ଅନେକ ମୁହୂର୍ତ୍ତରେ ମୁଁ ଏକଥା ହୃଦୟଙ୍ଗମ କରି ପାରୁନଥିଲି, ମାତ୍ର ଅନ୍ୟ ଏକ



ମୁହୂର୍ତ୍ତରେ ଖୁବ୍ ସହଜରେ ଅନୁଭବ କଲି। ସମୟସ୍ରୋତର ବହୁ ଦୂରକୁ ଅବଲୋକନ କଲାବେଳେ ଦେଖିଲି, ସୀମା ସେପାଖରେ ସହସ୍ର ବରଗଛ ଓ ସୀମା ଏପାଖରେ ସହସ୍ର ବରଗଛ ଶାଖା ମେଲାଇ ପ୍ରକୃତି ପୃଷ୍ଠକୁ ଆଚ୍ଛାଦିତ କରି ରଖିଛନ୍ତି। ସେମାନଙ୍କ ଶାଖାରେ ଲକ୍ଷ ଲକ୍ଷ ଚଢ଼େଇ କିଚିରି ମିଚିରି ହେଉଛନ୍ତି। ଚଢ଼େଇମାନେ ସୀମାରେଖା କ'ଣ ଅନ୍ଦାଜ କରି ପାରୁନାହାନ୍ତି ଏବଂ ଏପଟ ବରଗଛରୁ ସେପଟ ବରଗଛକୁ ଖୁସି ମନରେ ଉଡ଼ି ବୁଲୁଛନ୍ତି। ଏହି ବରଗଛମାନଙ୍କର ମୂଳଉତ୍ପତ୍ତି ହେଉଛି ସେଇ ବରଗଛ, ଯେଉଁଠି ମୋ ଶରୀର କ୍ଲାନ୍ତି ମେଣ୍ଟାଉଛି।

ମଞ୍ଜି ପବନରେ ଉଡ଼ି କରି ହେଉ ବା ଚଢ଼େଇମାନଙ୍କ ମଳରୁ ପଡ଼ି ହେଉ, କେଉଁଠି ଗଛଟିଏ ସୃଷ୍ଟି କରିବ, ସେକଥା କେବଳ ପ୍ରକୃତି ମା' ଜାଣିଥିବ। ସୀମାରେଖା ଜୈବ ମଣ୍ଡଳର ଅଭିଧାନରେ ନାହିଁ, କେବଳ ଅହଂକାରୀ ମଣିଷଙ୍କ ଅଭିଧାନରେ ଅଛି। ମଣିଷ ଯେଉଁଦିନ ପ୍ରକୃତିର ରହସ୍ୟକୁ ବୁଝିବ, ସେଦିନ ଏଇ ପୃଥିବୀଟା ଆତ୍ମୀୟମାନଙ୍କର ଘରଟିଏ ଭଳି ମନେହେବ। ସୀମାପାଇଁ ଦ୍ୱନ୍ଦ୍ୱ, ଝଗଡ଼ା ଝାଟି ତଥା ଧର୍ମ ଓ ଦେଶ ସୁରକ୍ଷା ନାଁରେ ଯୁଦ୍ଧପାଇଁ ଯୋଜନା କରାଯିବ ନାହିଁ। ସବୁ ମଣିଷଙ୍କର ଗୋଟିଏ ମାତ୍ର ସୀମା ରହିବ। ସମର ଓ ମହାସମର ମଣିଷ ମନରୁ ଅପସରି ଯିବ।

ସେଇ ସମୟଟି ନିଶ୍ଚିତ ଭାବରେ ପାଖେଇ ଆସୁଛି; ଏଇଭଳି ଏକ ଭରସାର ବାଣୀ ମୋ କର୍ଣ୍ଣଗୁହାରେ ଗୁଞ୍ଜରିତ ହେବାକୁ ଲାଗିଲା।

× × × ×

ଷଷ୍ଠ ମନ୍ତ୍ର –

> ଯସ୍ତୁ ସର୍ବାଣି ଭୂତାନ୍ୟାତ୍ମନ୍ୟେବାନୁପଶ୍ୟତି।
> ସର୍ବଭୂତେଷୁ ଚାତ୍ମାନଂ ତତୋ ନ ବିଜୁଗୁପ୍ସତେ ॥

ଯିଏ ସମସ୍ତଙ୍କୁ ସ୍ୱ ଆତ୍ମା ଭିତରେ ଦେଖିଥାଏ, ଏବଂ ସମସ୍ତଙ୍କ ଭିତରେ ନିଜ ଆତ୍ମାକୁ ଦେଖିଥାଏ, ସେ କାହାପ୍ରତି ଘୃଣା ପ୍ରକଟ କରିପାରେ ନାହିଁ।

ଆଜି ସକାଳବେଳା ସ୍ୱାଧ୍ୟାୟ ଆରମ୍ଭ ପୂର୍ବରୁ ଶ୍ରୀମାଙ୍କର ଏଇ ଲେଖାଟି (ଇଂରାଜୀରେ) ପଢ଼ିଥିଲି। ଏହା ଆଜିର ଆଲୋଚନାରେ ମୋତେ ଅନେକ ଖୋରାକ ଯୋଗାଇବ ବୋଲି ଆଶା ବାନ୍ଧିଲି।

"ଜୀବନର ଏକ ଉଦ୍ଦେଶ୍ୟ ଅଛି। ଉଦ୍ଦେଶ୍ୟଟି ହେଉଛି, ପରମେଶ୍ୱରଙ୍କୁ ଖୋଜିବା ଏବଂ ତାଙ୍କର ସେବା କରିବା। ପରମେଶ୍ୱର ଦୂରରେ ନାହାନ୍ତି, ସେ ଆମ ଭିତରେ ଅଛନ୍ତି, ଆମ ଗଭୀରତମ ପ୍ରଦେଶରେ ଏବଂ ଆମ ଅନୁଭବ ଓ ଭାବନାର ଉର୍ଦ୍ଧ୍ୱରେ। ପରମେଶ୍ୱରଙ୍କ ପାଖରେ ଅଛି ଶାନ୍ତି ଓ ନିଶ୍ଚିତତା ଏବଂ ଏପରିକି ସବୁ ସମସ୍ୟାର ସମାଧାନ।"

ତୁମ ସମସ୍ୟାକୁ ତାଙ୍କୁ ହସ୍ତାନ୍ତର କରିଦିଅ, ସେ ତୁମକୁ ସବୁ ବାଧା ବିପତ୍ତିରୁ ଉଦ୍ଧାର କରି ଆଣିବେ।"

–ଶ୍ରୀମା ୭ ଜୁଲାଇ, ୧୯୭୦

ମନ୍ତ୍ର ଦୁଇଟିର ଆଲୋଚନାକୁ ନିମ୍ନମତେ ଉପସ୍ଥାପନ କରୁଛି।

ପରମବ୍ରହ୍ମ ଏକ ଅପରିମେୟ ଚେତନା, ଦୃଶ୍ୟ ଅଦୃଶ୍ୟ ସବୁଠି ପରିବ୍ୟାପ୍ତ। ତାଙ୍କର ଶକ୍ତି ଅସୀମ। ସେହି ମହାନ୍ ଶକ୍ତିର ଅଂଶମାତ୍ର ଶକ୍ତି ମଣିଷଦ୍ୱାରା ଆବିଷ୍କୃତ ହୋଇଛନ୍ତି। ମଣିଷ ସେସବୁର ବ୍ୟବହାର କରି ନିଜ ଜୀବନକୁ ସହଜ ତଥା ତ୍ୱରାନ୍ୱିତ କରିପାରିଛି। ପୁନଶ୍ଚ ଅଧିକତର ତ୍ୱରାନ୍ୱିତ କରିବାପାଇଁ ଅହରହ ଗବେଷଣା ଓ ଉଦ୍ୟମ ଜାରି ରଖିଛି।

ଆଗରୁ ଆମେ ବିଦ୍ୟୁତ୍ ଶକ୍ତିକୁ ନେଇ ଆଲୋଚନା କରିଥିଲେ। ଏବେ ତରଙ୍ଗ ତଥା ଅନ୍ୟ ଶକ୍ତିର ଉଦାହରଣ ଦେଇ ଆଲୋଚନା କରିବାକୁ ଚେଷ୍ଟା କରିବା।



ତରଙ୍ଗ, କ୍ଷୁଦ୍ରାତିକ୍ଷୁଦ୍ର ଅଣୁକଣିକାର ତରଙ୍ଗାୟିତ ଚଳନ୍ ଶକ୍ତି। ଏହା ପ୍ରତି ପଦାର୍ଥରେ ଲୁକ୍କାୟିତ। ବାହାରକୁ ସ୍ଥିର ଜଣାପଡ଼ିପାରେ ବା ଚଳମାନ ବୋଲି ଅନୁଭୂତ ହୋଇପାରେ। ସ୍ଥିର ଅବସ୍ଥାରେ ଥିବାର ଜଣା ପଡୁଥିଲାବେଳେ ଏହା ନିକଟରେ ଥାଏ, ଚଳତ୍ ଅବସ୍ଥାରେ ଥିଲାବେଳେ ଏହା ନିକଟରୁ ଦୂର ପର୍ଯ୍ୟନ୍ତ ଧାବମାନ ଥାଏ। ଆମ ଚିର ପରିଚିତ ମୋବାଇଲ୍ ଫୋନ୍‌ର ଉଦାହରଣ ନେବା। ଆମେରିକାରେ ଥିବା ବନ୍ଧୁଜଣଙ୍କ ସାଙ୍ଗରେ ସକାଳୁ ସକାଳୁ କେଡ଼େ ସହଜରେ ମୁଁ କଥା ହୋଇ ପାରିଲି। ମୋବାଇଲ୍ ଫୋନ୍ ପ୍ରଥମେ ଆସିଲାବେଳେ ଆଶ୍ଚର୍ଯ୍ୟ ଲାଗୁଥିଲା। ଏବେ ଏତେବଡ଼ ବିସ୍ମୟକର ଯନ୍ତ୍ରଟି ନିତିଦିନିଆ ବ୍ୟବହାର୍ଯ୍ୟରେ ପରିଣତ ହୋଇଗଲାଣି। ସେଇପରି ଦୂରଦର୍ଶନ। ପୃଥିବୀର କୋଣ ଅନୁକୋଣରେ ଏହା ବୈଠକଘରେ ଉପଲବ୍ଧ। ତରଙ୍ଗ ଶକ୍ତିଟିକୁ ବୈଜ୍ଞାନିକମାନେ ଆବିଷ୍କାର କରି ବ୍ୟବହାରରେ ଲଗାଇ ଦେଇ ଆଧୁନିକ ମଣିଷ ଜୀବନକୁ ପୂରା ସରସ କରି ଦେଇଛନ୍ତି। ତରଙ୍ଗ ଶକ୍ତିଠାରୁ ଆହୁରି ସୂକ୍ଷ୍ମାତିସୂକ୍ଷ୍ମ ଶକ୍ତିମାନେ ଅନାବିଷ୍କୃତ ହୋଇ ଅଛନ୍ତି, ମାତ୍ର ମଣିଷ ଦିନେ ନା ଦିନେ ସେମାନଙ୍କ ପାଖରେ ପହଞ୍ଚି ଯିବ।

ଏ ବିଶ୍ୱବ୍ରହ୍ମାଣ୍ଡର ସବୁକିଛିରେ ରହିଛି ସ୍ଥିରତା ଓ ଗତିଶୀଳତା। ସ୍ଥିର ମନେ ହେଉଥିବା ବସ୍ତୁଟି ଭିତରେ ଅଣୁ, ପରମାଣୁ, ଇଲେକ୍ଟ୍ରନ୍, ପ୍ରୋଟନ୍ ଆଦିଙ୍କର କ୍ଷିପ୍ର ଗତି ବାହ୍ୟ ଚକ୍ଷୁକୁ ଦେଖାଯାଏ ନାହିଁ, ମାତ୍ର ଏପରି ଗତି ଅହରହ ଚାଲିଥାଏ।

କ୍ଷୁଦ୍ରାତି କ୍ଷୁଦ୍ର ପରମାଣୁ ଭିତରେ ଭରି ରହିଥିବା ଅମାପ ତେଜୋସ୍କ୍ରିୟ ଶକ୍ତିର ଭୀଷଣ ରୂପକୁ ତ ଏଇ ମାତ୍ର ଅଶୀ ବର୍ଷ ଭିତରେ ମଣିଷ ସମାଜ ଅଙ୍ଗେ ଲିଭାଇ ସାରିଛି। ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନର ହିରୋସୀମା ଓ ନାଗାସାକି ଦୁଇଟି ସହର ପରମାଣୁ ବୋମାଦ୍ୱାରା ଧ୍ୱସ୍ତ ବିଧ୍ୱସ୍ତ ହୋଇଗଲେ।

ପରମଶକ୍ତିମାନ ପରମବ୍ରହ୍ମଙ୍କର ଏପରି କ୍ଷୁଦ୍ର ଶକ୍ତ୍ୟାଂଶରେ ଏକ ପ୍ରକାର ସ୍ୱଭାବ ରହିଛି ଅର୍ଥାତ୍ ସେ ନିକଟରେ, ଦୂରରେ, ଭିତରେ, ବାହାରେ ସର୍ବତ୍ର ବିଦ୍ୟମାନ ଓ କାର୍ଯ୍ୟରତ। ତେବେ ପରମବ୍ରହ୍ମଙ୍କ ଅପରିମେୟ ଶକ୍ତିର ବିସ୍ମୟକର କାର୍ଯ୍ୟଶୈଳୀକୁ ମଣିଷ ମନ ବା ବୁଝିପାରିବ କିପରି !

× × × ×

ଆଜି ପଞ୍ଚମ ଦିନରେ ଆମେ ହାଜର ହେଲୁ। ଆଜି ସ୍ୱାଧ୍ୟାୟରେ ସପ୍ତମ ଓ ଅଷ୍ଟମ ମନ୍ତ୍ର ପଢ଼ାଯାଇଥିଲା। ରମେଶ ଭାଇ, ମାୟାଧର ଭାଇ ଏବଂ ରାଜୀବଭାଇ ଆସି ଆଜି ଶିବିରରେ ଯୋଗଦେଲେ। ଆଜି ଉପରଓଳି ଆମେ ପାହାଡ଼ ବୁଲି ପାରିଲୁ ନାହିଁ। ସମସ୍ତେ ସମତଳ ଭୂମିରେ ବୁଲିଲେ, ବିଲବାଡ଼ି ଦେଖିଲେ। ସମସ୍ତେ ଥାଉ ଥାଉ ଭଗବାନ ଭାଇ କଞ୍ଚାଲଙ୍କା ଡକାୟତି କଲେ। ଏ କଞ୍ଚାଲଙ୍କା ସମସ୍ତଙ୍କ ଉପକାରରେ ଆସିଲା। ଚିତ୍ତଭାଇ ଓ କେଦାର ଭାଇ ଏହି କଞ୍ଚାଲଙ୍କାର ଟେର୍ ପାଇଲେ ନାହିଁ, କାରଣ ସେମାନେ ଆଦୌ ଲଙ୍କା ଖାଆନ୍ତି ନାହିଁ।

ଅନନ୍ତଭାଇ(ସେ ଏବେ ଦିବଂଗତ) ଓ ମୁଁ ଆଜି ଦିନବେଳା ପଡ଼ିଆ ଆଡ଼େ ବୁଲିବାକୁ ଚାଲିଗଲୁ। ବୁଲିଲାବେଳେ ନାନା ପ୍ରସଙ୍ଗ ଆମ ଆଲୋଚନା ବଳୟକୁ ଚାଲିଆସିଲା, ଯେପରିକି ଡେରାରେ ଆମେ କ'ଣ ସବୁ କରିବା ? ଓଡ଼ିଶାରେ ଆରମ୍ଭ ହୋଇଯାଇଥିବା ଆଧ୍ୟାତ୍ମିକ ବିପ୍ଳବ, କର୍ମମାଧ୍ୟମରେ ସାଧନା ଇତ୍ୟାଦି ଇତ୍ୟାଦି।

ଉପରଓଳି ଅଜୟ ଓ ମୁଁ ବୁଲିବାରୁ ବିରତ ହେଲୁ। ଆମର ବ୍ୟାଡ୍‌ମିଣ୍ଟନରେ ମନ ଲାଗିଗଲା। ବ୍ୟାଡ୍‌ମିଣ୍ଟନ ଖେଳ, ବିନା କୋର୍ଟ ଓ ନେଟ୍‌ରେ ଚାଲିଥିଲା। ତା'ପରେ କୃଷ୍ଣଭାଇ, ରାମଭାଇଙ୍କ ସହାୟତାରେ ନଡ଼ା ଆଣି ଶୀତ ପଶି ଆସୁଥିବା ଫାଙ୍କ ଜାଗାଗୁଡ଼ିକୁ ବନ୍ଦ କରିବାରେ ଲାଗିଗଲୁ। ଏହାଦ୍ୱାରା ରାତିରେ କିଛି ମାତ୍ରାରେ ଶୀତର ପ୍ରକୋପ ହ୍ରାସ ପାଇଥିଲା।



× × × ×

ଆଜି ସକାଳୁ ସକାଳୁ ସମସ୍ତେ ଉଠିପଡିଲୁ ଏବଂ ନିଆଁଖୁଣ୍ଟା ଚାରିପାଖରେ ହାଜିରା ପକାଇ ନିତ୍ୟକର୍ମ ସମାପନ କଲୁ। ସକାଳୁ ରମେଶଭାଇ ଆଦି ସେମାନଙ୍କର ଅନିଚ୍ଛାସତ୍ତ୍ୱେ ଶିବିରରୁ ବିଦାୟ ନେବାକୁ ବାଧ୍ୟ ହେଲେ, କାରଣ ସେମାନଙ୍କୁ ଠିକ୍ ସମୟରେ ସରକାରୀ କର୍ମକ୍ଷେତ୍ରରେ ହାଜର ହେବାକୁ ପଡ଼ିବ। ଆଜି କାମ ୧୦ମିନିଟ୍ ବିଳମ୍ବରେ ଆରମ୍ଭ ହେଲା। ଆକାଶରେ ମେଘ ବାଦଲ ଭରି ରହିଥିଲା। ଆଜି କାମଜାଗାରେ ପଟିଲୋ ପାଠଚକ୍ର ଭାଇମାନେ ଯୋଗ ଦେଇଥିବାରୁ କର୍ମକ୍ଷେତ୍ରଟି ଉତ୍ସାହପୂର୍ଣ୍ଣ ହୋଇଉଠିଥିଲା। ସମସ୍ତେ ମାତୃକାର୍ଯ୍ୟରେ ଗୁଣ୍ଡୁଚିମୂଷା ସାଜିବାକୁ ଆଗଭର। ଏହା ପ୍ରକୃତରେ ଅତି ଆନନ୍ଦର କଥା। ଦୟାନିଧି ଭାଇଙ୍କ କୃପାରୁ ଆଜି କାମ ମଝିରେ ସିଝା କନ୍ଦମୂଳ ଆସ୍ୱାଦନ କରିବାକୁ ମିଳିଲା। ପ୍ରାୟ ସକାଳ ନଅଟା ବେଳକୁ ଟିପି ଟିପି ବର୍ଷା ପଡ଼ିବାକୁ ଲାଗିଲା। ତଥାପି କାମ ବନ୍ଦ କରିବାକୁ କେହି କହୁନଥିଲେ। କାମ ମଝିରେ ଜଣେ ଭାଇ 'ଅଲ୍ ଆଉଟ୍'ରେ ଆଗ୍ରହୀ ବୋଲି ବଡ଼ପାଟିରେ ଜଣାଇଦେଲେ। ଏହାଦ୍ୱାରା ହସରୋଳ ସୃଷ୍ଟି ହୋଇଥିଲା। କାମ ସାରି ଆମେ ମାଟିପାଇଁ ରାସ୍ତାରେ ପକାଇଥିଲୁ। ସେଠାରେ ଠିଆ ହୋଇଥିଲା ବେଳେ ଗୋଟିଏ ଜିପ୍ ତା'ଉପର ଦେଇ ପାରି ହେବାକୁ ଉଦ୍ୟତ ହେଉଥିବା ସମୟରେ ଯାଜପୁରର ଅଦ୍ୱୈତ ଭାଇଙ୍କ ବୁଦ୍ଧିରେ ପଡ଼ି ଜିପ୍‌ଟି ହଇରାଣ ହୋଇଗଲା। ଜିପ୍‌ରେ ବସିଥିବା ବାବୁଜଣଙ୍କ ଜିପ୍‌ରୁ ଓହ୍ଲାଇବାପାଇଁ ଦୋ ଦୋ ପାଞ୍ଚ ହେଉଥିଲେ, ତା'ର ନକଲ ଅନନ୍ତ ଭାଇ ପ୍ରାଞ୍ଜଳ ଭାବରେ ପ୍ରଦର୍ଶନ କରାଉଥିଲେ। ମାତ୍ର ବେଶି ଲୋକ ତାହା ଦେଖି ପାରିନଥିଲେ। ଆଜି ଶୀତ ଯୋଗୁଁ ତିନି ଚାରିଜଣଙ୍କ ବ୍ୟତୀତ ଆଉ କେହି ଗାଧୋଇଲେ ନାହିଁ। ନଳକୂଅ ପାଖରେ ଧୁଆଧୋଇ ହୋଇ ଦିନଚର୍ଯ୍ୟା ସାରିଦେଲେ।

ଆଜି ୧୦ ମିନିଟ୍ ଆଗରୁ କାମ ସାରି ଦିଆଗଲା । ଆଜି ଜଳଖିଆରେ ଥିଲା, ଚୁଡ଼ା ଗୁଡ଼ ଚକଟା ସାଙ୍ଗକୁ ପିଆଜ, ଲଙ୍କା ଓ ଲୁଣ ।

ଏହା ପରେ ଧ୍ୟାନଘରେ ଧୂନି ଜଳିଲା ଓ ଋଷି ଚିତ୍ତରଞ୍ଜନ (ଚିତ୍ତଭାଇ) ଶିଷ୍ୟମାନଙ୍କୁ ଉପନିଷଦ ପଢ଼ାଇଲେ । ଆଧୁନିକ ବିଜ୍ଞାନକୁ ଆଖିରେ ରଖି ମନ୍ତ୍ରମାନଙ୍କର ବ୍ୟାଖ୍ୟାନ କରାଯାଇଥିଲା । ଆଜିର ଆଲୋଚନାରେ ଥିଲା ନବମ, ଦଶମ ଓ ଏକାଦଶ ମନ୍ତ୍ର ।

× × × ×

ଆଲୋଚନା ମଝିରେ ଭଗବାନ ଭାଇ ଲୁଣ, ତେଜପତ୍ର, ଅଦା ପକାଇ ଏକ ଅଭିନବ ଗରମ ଚାହା ପ୍ରସ୍ତୁତ କରି ଆଲୋଚନା କ୍ଷେତ୍ରକୁ ନେଇ ଆସିଲେ । ଏଥିରେ ଅନନ୍ତଭାଇ ଓ ମୁଁ ଗୋଟିଏ ଗିଲାସ ଚାହା ପିଇବାକୁ ସମର୍ଥ ହୋଇପାରିଲୁ ନାହିଁ । ଅନ୍ୟମାନେ ଖୁସିରେ ସୁଁ ସୁଁ କରି ଖେପିଗଲେ । ମଧ୍ୟାହ୍ନ ଭୋଜନରେ ଭାତ ଡାଲି ଓ ଆଳୁଭର୍ତ୍ତା ଥିଲା । ତା ସାଙ୍ଗକୁ ଥିଲା ଲଙ୍କା, ଲୁଣ ଓ ପିଆଜ । ମଧ୍ୟାହ୍ନ ଭୋଜନ ପରେ ସମସ୍ତେ ଦ୍ୱି'ପହରେ ଯୋଡ଼ାଯୋଡ଼ି ହୋଇ ଘଣ୍ଟାଏ ଶୋଇ ପଡ଼ିଲେ । ଅନନ୍ତଭାଇ ନଶୋଇ ପିଲାଙ୍କ ସାଥିରେ ଗପସପରେ ମଜିଗଲେ । ଜଣେ ଶିକ୍ଷକ ଜାଣେ ଏପରି ଗପସପର ମହତ୍ତ୍ୱ । ଆମପାଇଁ ଏହାଥିଲା ନିଦ ଭଙ୍ଗୁରା ଦୁଷ୍ଟାମି କାମ ।

ସକାଳେ ପିଲାଙ୍କର କଣ୍ଠସ୍ୱର ଥିଲା ବେଶ୍ ସୁମଧୁର । ଏହା ଆଜିର ସଂଗୀତ ସରଗମ୍‌ରୁ ଜଣାପଡ଼ିଲା । ଉପରଓଳିର ପାଗ ଆମମାନଙ୍କୁ ନିଆଁ ପାଖରୁ ଛାଡ଼ିଲା ନାହିଁ । ଅନନ୍ତଭାଇ, ମୁଁ, ରାମଭାଇ, ତାଳଚେର କେନ୍ଦୁଝର ଓ ଯାଜପୁରର ବୋଲି ଭାଷାକୁ ନେଇ କେଉଁଠି କେତେ ବୋଲି ଶବ୍ଦ ଅଛି, ସେ ସମ୍ବନ୍ଧରେ ବିତର୍କ କରୁଥିଲୁ । ତାଳଚେର ଓ କେନ୍ଦୁଝର ଜିତିଗଲେ । ତା'ପରେ ସମସ୍ତେ ନଡ଼ିଆ, ମୁଢ଼ି, ଭଜା ବାଦାମ ବଣ୍ଟନ ଜାଗାରେ ରୁଣ୍ଡ

ହୋଇଗଲେ।

ଆଜି ରାତ୍ରିର ଆଲୋଚନା ବହୁ ସମୟ ଧରି ଚାଲିଲା। ଶ୍ରୀମାଙ୍କ ପ୍ରଶ୍ନୋତ୍ତର ବହିରୁ "ଉତ୍ତମ ବନ୍ଧୁ" ଏବଂ "ସମବେତ ଧ୍ୟାନ" ଉପରେ ଆଲୋଚନା ସରଗରମ ହେଉଥିବାରୁ ସାଂସ୍କୃତିକ କାର୍ଯ୍ୟକ୍ରମ ପାସୋରି ହୋଇଗଲା।

ଆଜି ଦିନସାରା ଆକାଶରେ ମେଘ ଦେଖି ଦେଖି ଆମେ ଚାଳରେ କଣାଗୁଡ଼ିକୁ ନିରେଖି ଚାହୁଁଥିଲୁ ଓ ପ୍ରମାଦ ଗଣୁଥିଲୁ। ମାତ୍ର ରାତ୍ର ଭୋଜନ ସରିଲା ବେଳକୁ ଆକାଶ ଫର୍ଚ୍ଛା ହୋଇଯାଇଥିଲା। ତାରାମାନେ ଜନମହୁଡ଼ି ପାହାଡ଼ ଉପରୁ ଆମକୁ ମିଟିମିଟି କରି ଅନାଉଥିଲେ ଏବଂ ଜଣାଇଦେବାକୁ ଚାହୁଁଥିଲେ ଯେ ସେମାନେ ଆମକୁ ବର୍ଷା ଦାଉ ସାଧିବ ବୋଲି ଠକି ଦେଇ ପାରିଲେ।

ଆଜି ସପ୍ତମ ଦିନ ବର୍ଷାର ପ୍ରକୋପ ଛାଡ଼ିଲା, ଆକାଶରୁ ବାଦଲ ଚାଲିଗଲା। ମାତ୍ର ଶୀତର ପ୍ରବଳ ପ୍ରତାପ ଆମମାନଙ୍କୁ ପୁଣି ଘାଇଲା କରିବାକୁ ଆଗେଇ ଆସିଲା। ଶେଯ ଉପରେ ପଡ଼ିରହିବାକୁ ଆମେ ଯେପରି ବାଧ୍ୟ ହେଲୁ। ଉଠିବା ସାମାନ୍ୟ ଡେରି ହେଲା ଏବଂ ସେହି ଅନୁସାରେ ବିଳମ୍ବରେ କାମ ଆରମ୍ଭ ହେଲା।

ସକାଳୁ ସକାଳୁ ରାମଭାଇ ଓ ଅଜୟ ଜଣାଇଦେଲେ ଯେ ବର୍ଷାଯୋଗୁଁ ମାଟି ଚିକିଟା ଧରିଛି। କୋଦାଳରେ ମାଟି ଲାଖିରହିବ, ପୋଖରୀ କାମ କରିବା ସମ୍ଭବ ନୁହଁ। ଆମେ ପ୍ରମାଦ ଗଣିଲୁ। କାମ ସମୟଟା କିପରି ଉପଯୋଗ କରାଯିବ। ଆଉକିଛି ମୁଖ୍ୟ କାମ ଆଖିକୁ ଦେଖା ଯାଉ ନ ଥିଲା। ଅନନ୍ତଭାଇ ଓ ମୁଁ କାର୍ଯ୍ୟକ୍ଷେତ୍ରଟିକୁ ତଦାରଖ କରିବାକୁ ଗଲୁ। ପୋଖରୀ ମଝି ଜାଗାରେ ମାଟି ଠିକ୍ ଅଛି ଏବଂ କାମ କରି ହେବ ବୋଲି

ଆମେ ସମସ୍ତଙ୍କୁ ଜଣାଇଦେଲୁ । ତା'ପରେ କାମ ଆରମ୍ଭ ହେଲା । ସକାଳ ଶୀତ ଯୋଗୁଁ ପାଦତଳର ଥଣ୍ଡା ପ୍ରବଳ ଥିଲା । ସୂର୍ଯ୍ୟ ପୂର୍ବାକାଶରୁ ବାହାରି ଆସିଲାବେଳକୁ ତାଙ୍କର ସୁନେଲି ପ୍ରଭା ଛାଡ଼ି ଯାଇଥିଲା । ଟୋପା ଖରା ଆସି ସିଧା ଆମ ମୁହଁ ଉପରେ ପଡ଼ିଲା । ସୂର୍ଯ୍ୟ କିରଣର ଏପରି ଚୁମ୍ବନ ଆମକୁ ଉଷୁମ ତଥା ଉଲ୍ଲସିତ କରି ରଖିଲା ।

ମନ୍ତ୍ର ୭ -

ଯସ୍ମିନ୍‌ସର୍ବାଣି ଭୂତାନି ଆତ୍ମୈବାଭୂଦ୍ ବିଜାନତଃ ।
ତତ୍ର କୋ ମୋହଃ କଃ ଶୋକ ଏକତ୍ୱମନୁପଶ୍ୟତଃ ॥

ମନ୍ତ୍ର ୮ -

ସ ପର୍ଯ୍ୟଗାଚ୍ଛୁକ୍ରମକାୟମବ୍ରଣମସ୍ନାବିରଂ
ଶୁଦ୍ଧମପାପବିଦ୍ଧମ୍ ।
କବିର୍ମନୀଷୀ ପରିଭୂଃ ସ୍ୱୟମ୍ଭୁଃୟାଥାତଥ୍ୟତୋଽର୍ଥାନ୍
ବ୍ୟଦଧାଚ୍ଛାଶ୍ୱତୀଭ୍ୟଃ ସମାଭ୍ୟଃ ॥

ଆତ୍ମଜ୍ଞାନୀ ମଣିଷ ଏପରି ଏକ ଉଚ୍ଚତର ମନର ସ୍ଥିତିରେ ରହିଥାଏ, ଯେଉଁଠାରେ ସେ ସମସ୍ତଙ୍କ ମଧ୍ୟରେ ଗୋଟିଏ ଚେତନାକୁ ଅନୁଭବ କରିଥାଏ । ଏଭଳି ଆତ୍ମଜ୍ଞାନୀ ପୁରୁଷପାଇଁ ମୋହ ନଥାଏ କି ଦୁଃଖନଥାଏ । ତାଙ୍କର କେହି ଶତ୍ରୁମିତ୍ର ନଥାନ୍ତି । ସମସ୍ତଙ୍କ ଭିତରେ ସେ ନିଜକୁ ଦେଖିପାରନ୍ତି ଓ ନିଜଭିତରେ ସବୁକୁ ଦେଖିପାରନ୍ତି । ଜଡ଼ ପଦାର୍ଥର ଏକ ଦୃଷ୍ଟାନ୍ତକୁ ବିଶ୍ଳେଷଣ କରି ଆମେ ଏ ବିଷୟରେ ଟିକିଏ କଳ୍ପନା କରିପାରିବା । ଆମେ ଗୋଟିଏ ସୁନା ରୂପାର ଅଳଙ୍କାର ଦୋକାନକୁ ଯାଇ ଦେଖିଲେ, ସେଠାରେ ବିଭିନ୍ନ ରକମର ଅଳଙ୍କାର ସଜାହୋଇଛି, ସୁନା ରୂପାରେ ତିଆରି ଛୋଟ ଛୋଟ ଘରସଜା ମୂର୍ତ୍ତି ବି ରହିଛି । ସବୁକିଛି ପୃଥକ୍ ପୃଥକ୍ ଭାବରେ ନିଜ



ନିଜ ଜାଗାରେ ରହି ଆମ ମନକୁ ଆକର୍ଷଣ କରିଚାଲିଛନ୍ତି। କିଣିବାପାଇଁ ମନରେ ଇଚ୍ଛା ଜାଗ୍ରତ ରହିଛି। ମାତ୍ର ଆମେ ଟିକିଏ ପଛକୁ ଘୁଞ୍ଚି ମନେପକାଇ ପାରିଲେ ବୁଝିପାରିବା ଯେ ସୁନା ରୂପାର ଏକ ତରଳ ଅବସ୍ଥାରୁ କାରିଗର ଛାଞ୍ଚରେ ପକାଇ ଏପରି ଅଲଗା ଅଲଗା ରୂପ ଦେଇଛନ୍ତି। କିନ୍ତୁ ମୂଳତଃ ସେମାନେ ଗୋଟିଏ ଉତ୍ସରୁ ତିଆରି ହୋଇଛନ୍ତି ଏବଂ ସେମାନଙ୍କ ଗଠନ ଉପାଦାନ ସମାନ। ଆମେ ଯେତେବେଳେ ଆତ୍ମଜ୍ଞାନ ଲାଭ କରି ଏହିପରି ଏକ ସର୍ବମୟ ଚେତନାର ସ୍ତରଟିରେ ଉପନୀତ ହେବା, ସେତେବେଳେ ଏହି ସପ୍ତମ ମନ୍ତ୍ରଟିର ଅର୍ଥ ବୁଝିପାରିବା।

ପରମାତ୍ମା ସୃଷ୍ଟିର ମୂଳଉତ୍ସ ଓ ସେ ସର୍ବମୟ କର୍ତ୍ତା। ସେ ଅନେକ ରୂପରେ ଏହି ଜଡ଼ ଜଗତରେ ନିଜକୁ ସୀମିତ ଭାବରେ ପ୍ରକାଶ କରିଛନ୍ତି ଓ କରୁଛନ୍ତି ମଧ୍ୟ। ମାତ୍ର ଅନେକ କ୍ଷେତ୍ରରେ ସେ ନିଜକୁ ଲୁଚାଇ ରଖିଛନ୍ତି। ସେ ସଚରାଚର ବିଦ୍ୟମାନ। ତାଙ୍କର ସ୍ୱରୂପ ଶୁଦ୍ଧ, ସେ ଖାଦହୀନ ଦୀପ୍ତିମାନ ପୁରୁଷ।

ସେ ଆମମାନଙ୍କ ପରି ପାର୍ଥିବ ଶରୀର ଧାରଣ କରି ଅବସ୍ଥାନ କରୁନାହାନ୍ତି। ସେ ସୂକ୍ଷ୍ମ ଓ ଅଦୃଶ୍ୟ ଭାବରେ ସର୍ବବିଦ୍ୟମାନ। ସେ ପରିପୂର୍ଣ୍ଣ ଓ ନିର୍ବିକାର। ସେ ବିକାର ଶୂନ୍ୟ। ସମଗ୍ର ଜଡ଼ ଜଗତ, ଜୀବମଣ୍ଡଳର ସେ ହର୍ତ୍ତାକର୍ତ୍ତା ବିଧାତା, ସେ ସର୍ବଜ୍ଞାତା। ଦୁଷ୍ଟ ପାପୀ, ଜ୍ଞାନୀ ଆଦିର ଭେଦଭାବ ତାଙ୍କ ନିକଟରେ ନଥାଏ। ପଣ୍ଡିତ, କବି, ମୁନି, ଆତ୍ମଜ୍ଞାନୀମାନେ ତାଙ୍କ ନିକଟରେ ସଦା ସମର୍ପିତ ହୋଇ ରହିଥାନ୍ତି। ସେ ଅନାଦି ଅନନ୍ତ। ସୃଷ୍ଟିର ପ୍ରାରମ୍ଭରୁ ସେ ସବୁକିଛିକୁ ଯଥାସ୍ଥାନରେ ରଖି ସୃଷ୍ଟିର ରଚନାକୁ ଆଗେଇ ନେଉଛନ୍ତି। ସେ ତାଙ୍କର ନବସର୍ଜନା ପାଇଁ ଯେଉଁ ହାତୁଡ଼ି ନିହାଣ ପ୍ରହାର କରିଚାଲିଛନ୍ତି, ତା'ର ପ୍ରଭାବରେ ସୃଷ୍ଟି ଖଣ୍ଡିଆ ଖାବରା ହେଉଛି ଓ ସ୍ଫୁଲିଙ୍ଗ

ବାହାରୁଛି । ଏସବୁକୁ ଆମେ ସୀମିତ ଜ୍ଞାନରେ ବୁଝିବାକୁ ଅସମର୍ଥ ହେଉଛେ ।

ପାର୍ଥିବ ଜଗତରେ ମଣିଷ ସଂସାରର ପରିପ୍ରକାଶ ହୋଇଛି, ଯେଉଁଠି ମଣିଷ ଦେହପ୍ରାଣ ମନର ଅଧିଷ୍ଠାନ ଧରି ସଂସାରିକ ଜୀବନ ଯାତ୍ରା କରୁଛି । ତା ଭିତରେ ମନର ରାଜୁତି ବେଶ୍ ପ୍ରଭାବଶାଳୀ, ଯାହାକି ଅହଂର ବିଭିନ୍ନ ସ୍ତର ଦେଇ ଗତି କରିଥାଏ । ଜନ୍ମ ଓ ମୃତ୍ୟୁ ମଧ୍ୟରେ ଜୀବନକୁ ସୀମିତ କରି ଦେଖିବା ଏବଂ ଏଇ ଜୀବନଯାତ୍ରାର ପରିସରଟିକୁ ସବୁକିଛି ବୋଲି ଗ୍ରହଣ କରି ଜୀବନକୁ ଉପଭୋଗ କରିବା ଅନ୍ଧକାର ମଧ୍ୟରେ ପ୍ରବେଶ କରିବା ସହ ସମାନ । ଜନ୍ମ ମୃତ୍ୟୁର ବାହାରେ ଅଦୃଶ୍ୟ ଜଗତଟି ବିଦ୍ୟମାନ । ତାହା ଏହି ପାର୍ଥିବଜଗତର ସାଂସାରିକ ଜୀବନଠାରୁ ଅନେକ ଭାବରେ ସୁନ୍ଦର ଓ ମନୋଜ୍ଞ ଅଟେ । ଯେଉଁମାନେ ସେଇ ଜଗତଟିରେ ବାସ କରିବା ପାଇଁ ସଦା ସର୍ବଦା ସାଧନାରତ ଥାନ୍ତି, ସେମାନେ ଏହି ପାର୍ଥିବ ଜଗତର ସଂସାରଟିକୁ ଉପେକ୍ଷା କରିଥାନ୍ତି । ଫଳରେ ଶରୀର-ପ୍ରାଣ-ମନର ଅଧିଷ୍ଠାନଟିରେ ପାର୍ଥିବ ଜଗତଟି ନିଜର ଇନ୍ଦ୍ରିୟବୋଧ ଭିତରେ ପ୍ରାପ୍ତ ହୋଇଥିଲେ ବି ମଣିଷମାନେ ଏହାକୁ ଉପଭୋଗ କରିପାରନ୍ତି ନାହିଁ । ତେଣୁ ସେମାନେ ଆହୁରି ଅଧିକ ଅନ୍ଧକାର ଭିତରେ ପ୍ରବେଶ କରିଥାନ୍ତି ବୋଲି ଈଶୋପନିଷଦରେ ଋଷିମାନେ ଜଣାଇ ଦେଇଅଛନ୍ତି ।

ପାର୍ଥିବ ଜଗତ ଭିତରେ ଜନ୍ମ ମୃତ୍ୟୁର ଦୁଇଦ୍ୱାର ମଧ୍ୟରେ ଯେଉଁମାନେ ଜୀବନଟିକୁ ସୀମିତଭାବରେ ଦେଖିଥାନ୍ତି, ସେମାନେ ମୃତ୍ୟୁକୁ ଭୟ କରିଥାନ୍ତି । ସଂସାରର ଜୀବନ ସେମାନଙ୍କ ପାଇଁ ଖୁବ୍ ଲୋଭନୀୟ ହୋଇଥାଏ ଏବଂ ଏହି ଉପଭୋଗର ଜୀବନକୁ ପରିତ୍ୟାଗ କରିବାକୁ ସେମାନେ ଇଚ୍ଛା କରି ନ ଥାନ୍ତି । ମାତ୍ର ସେମାନେ ଭଲଭାବରେ ଜାଣନ୍ତି ଯେ ଦିନେ ନା ଦିନେ ସେ ନିଶ୍ଚିତ ମୃତ୍ୟୁବରଣ କରିବେ । ତାଙ୍କ ଭିତରେ ମୃତ୍ୟୁ ଭୟ ସବୁବେଳେ

ରହିଥାଏ। ଏହି ମୃତ୍ୟୁଭୟ ଯୋଗୁଁ ସେମାନେ ଜୀବନକୁ ସୁନ୍ଦର ତଥା ନିଃସ୍ୱାର୍ଥପର ଭାବରେ ବିତାଇ ପାରନ୍ତି ନାହିଁ। ଆୟୁକାଳ ଭିତରେ କେବଳ ନିଜର ତଥା ନିଜ ପରିବାରର ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ସେମାନଙ୍କର ସମସ୍ତ ଜୀବନ ବିତିଯାଏ।

ଯେଉଁମାନେ ଜନ୍ମମୃତ୍ୟୁର ଦ୍ୱାର ବାହାରେ ଅମରତ୍ୱର ଅନ୍ୟ ଜଗତଟିକୁ ହୃଦୟଙ୍ଗମ କରିଥାନ୍ତି, ସେମାନଙ୍କ ଜୀବନଯାତ୍ରାର ପରିକଳ୍ପନା ପରିବ୍ୟାପ୍ତ ହୋଇଥାଏ। ଏକ ଅନନ୍ତ ଜୀବନଯାତ୍ରା ପଥରେ ସେମାନେ ଚାଲୁଛନ୍ତି ବୋଲି ହୃଦୟଙ୍ଗମ କରିଥାନ୍ତି। ତେଣୁ ସାଧାରଣ ମଣିଷପରି ସେମାନେ ସ୍ୱାର୍ଥାନ୍ୱେଷୀ ଜୀବନ ନବଞ୍ଚି ନିସ୍ୱାର୍ଥପର ଭାବରେ ସମଗ୍ର ଜଗତର ତଥା ଜୀବମଣ୍ଡଳର ମଙ୍ଗଳପାଇଁ ବଞ୍ଚିବାକୁ ଚେଷ୍ଟା କରିଥାନ୍ତି।

ନବମ ମନ୍ତ୍ର -

ଅନ୍ଧଂ ତମଃ ପ୍ରବିଶନ୍ତି ୟେଽବିଦ୍ୟାମୁପାସତେ।
ତତୋ ଭୂୟ ଇବ ତେ ତମୋ ୟ ଉ ବିଦ୍ୟାୟାଂ ରତାଃ ॥

ଦଶମ ମନ୍ତ୍ର -

ଅନ୍ୟଦେବାହୁର୍ବିଦ୍ୟୟାଽନ୍ୟଦାହୁରବିଦ୍ୟୟା।
ଇତି ଶୁଶ୍ରୁମ ଧୀରାଣାଂ ୟେ ନସ୍ତଦ୍ୱିଚଚକ୍ଷିରେ॥

ଏକାଦଶ ମନ୍ତ୍ର -

ବିଦ୍ୟାଂଚାବିଦ୍ୟାଂଚ ୟସ୍ତଦ୍ୱେଦୋଭୟୟଂ ସହ।
ଅବିଦ୍ୟୟା ମୃତ୍ୟୁଂ ତୀର୍ତ୍ୱା ବିଦ୍ୟୟାଽମୃତଶ୍ନୁତେ॥

ସହଜ ଭାବରେ ଆମେ ଏହିପରି ବୁଝିବା - ଯେଉଁମାନେ ଅବିଦ୍ୟା ବା ଅଜ୍ଞାନତାର ଉପାସନା କରନ୍ତି ସେମାନେ ଅନ୍ଧକାର ଭିତରେ ପ୍ରବେଶ

କରିଥାନ୍ତି । ମାତ୍ର ଯେଉଁମାନେ କେବଳ ବିଦ୍ୟା (ଆତ୍ମଜ୍ଞାନ) ରେ ନିଜକୁ ନିବିଷ୍ଟ କରିଥାନ୍ତି, ସେମାନେ ଆହୁରି ଅଧିକତର ଅନ୍ଧକାରରେ ରହିଥାନ୍ତି । ଯିଏ ଉଭୟ ଅବିଦ୍ୟା ଓ ବିଦ୍ୟାକୁ ବୁଝିପାରନ୍ତି, ସେ ମୃତ୍ୟୁକୁ ପାର ହୋଇ ଅମୃତତ୍ୱ ପ୍ରାପ୍ତ ହୋଇଥାନ୍ତି । ଏଠାରେ ଆମକୁ ସତର୍କ କରି ଦିଆଯାଇଛି ଯେ କେବଳ ସଂସାର ଜ୍ଞାନ ଉପରେ ନିର୍ଭର କରୁଥିବା ବ୍ୟକ୍ତି ଏକ ଉଚ୍ଚତର ଆଲୋକିତ ସୋପାନର ଜୀବନ ଅଛି ବୋଲି ଜାଣିପାରେ ନାହିଁ । ସଂସାରକୁ ସର୍ବସ୍ୱ ମନେକରି ସେ ଜୀବନ ଧାରଣ କରେ, ଯାହାକି ଆଲୋକିତ ସୋପାନଟି ତୁଳନାରେ ଅନ୍ଧକାରପୂର୍ଣ୍ଣ ହୋଇ ରହିଥାଏ । ଯେଉଁମାନେ କେବଳ ଜ୍ଞାନର ଉପାସନା କରନ୍ତି, ତପସ୍ୱୀ ହୋଇ ଗ୍ରନ୍ଥର ଜ୍ଞାନପାଇଁ ଜୀବନ ବିତାଇ ଦେଇଥାନ୍ତି, ସେ ଏ ସଂସାରକୁ ବୁଝିପାରନ୍ତି ନାହିଁ । ସଂସାରଟା ଚଳପ୍ରଚଳର ଜଗତ, ଯେଉଁଠି ଈଶ୍ୱର ନିଜକୁ ପ୍ରକାଶ କରିବାପାଇଁ ନିଜର ବିବର୍ତ୍ତନ ପ୍ରକ୍ରିୟାଟିକୁ ଜାରି ରଖିଥାଆନ୍ତି । ଏହି ସଂସାରପ୍ରତି ଯେଉଁମାନେ ବିମୁଖ ହୋଇ କେବଳ ଉଚ୍ଚସ୍ତରର ବିଦ୍ୟାପ୍ରତି ଲକ୍ଷ୍ୟ ରଖନ୍ତି, ତାହା ସେମାନଙ୍କୁ ଘୋର ଅନ୍ଧକାର ମଧ୍ୟକୁ ଠେଲିଦିଏ । ତଥାକଥିତ ଜ୍ଞାନୀ ବ୍ୟକ୍ତିମାନଙ୍କୁ ଉପନିଷଦର ପ୍ରବକ୍ତାମାନେ ଏଠାରେ ଏକଥା ଜଣାଇ ଦେବାପାଇଁ ବାଧ୍ୟ ହେଉଛନ୍ତି । ସିଦ୍ଧାର୍ଥ ରାଜପୁତ୍ର ଥିଲାବେଳେ ସଂସାରରୁ ବିମୁଖ ହେଲେ, ତପସ୍ୟା କଲେ, ତପସ୍ୟା ଲବ୍ଧ ଜ୍ଞାନନେଇ ସଂସାର ଭିତରକୁ ଫେରିଲେ ଏବଂ ସଂସାର କିପରି ଦୁଃଖରହିତ ହୋଇ ପାରିବ, ସେଥିପାଇଁ  ନିଜ ତପସ୍ୟାର ଅନୁଭୂତି ଅନୁସାରେ ପରେ ସନ୍ଦେଶ ପ୍ରଦାନ କଲେ – "କାମନାର ବିନାଶରେ ଦୁଃଖର ବିନାଶ ହୁଏ" । ଏଥିରୁ ଜଣାପଡୁଛି ସେ କେବଳ ସଂସାର ଜ୍ଞାନ କିମ୍ବା କେବଳ ଆତ୍ମଜ୍ଞାନରେ ନିଜକୁ ନିବିଷ୍ଟ କରିନଥିଲେ ।

ଶ୍ରୀଅରବିନ୍ଦ ଏକ ନୂତନ ଜଗତ ପରିପ୍ରକାଶ ହେବ ବୋଲି ଦୃଢ଼ବାଣୀ



କରିଛନ୍ତି। ସଂସାରଟି ପରମାତ୍ମାଙ୍କର ଯୋଗମାୟାରେ ଆବୃତ। ତେଣୁ ଏଠାରେ ଜଣେ ସଂସାର ବିଦ୍ୟାରେ ନିଜକୁ ସୀମାବଦ୍ଧ କରିଥାଏ। ଯେଉଁମାନେ ବୁଝିପାରନ୍ତି ସେମାନେ ସଂସାରକୁ ମିଥ୍ୟାମାୟା କହି ପରିତ୍ୟାଗ କରି ଆତ୍ମଜ୍ଞାନରେ ଉର୍ଦ୍ଧ୍ୱାରୋହଣ କରିବାକୁ ପ୍ରୟାସୀ ହୁଅନ୍ତି। ଶ୍ରୀଅରବିନ୍ଦ କହିଛନ୍ତି - ଜଗତ୍ ସତ୍ୟ, ବ୍ରହ୍ମନ୍ ସତ୍ୟ। ଜଣେ ସାଧକ ଯୋଗମାୟାରୁ ଉର୍ଦ୍ଧ୍ୱକୁ ଉଠିଯାଇ କ୍ରମେ ବିଦ୍ୟାକୁ ଅନୁଭବ କରିବ, ସେଥିରେ ନିଜକୁ ରୂପାନ୍ତର କରିବ ଏବଂ ପୁଣି ସଂସାର ଭିତରକୁ ଓହ୍ଲାଇ ପାରିବ ଓ ସମଗ୍ର ସଂସାରର ଉର୍ଦ୍ଧ୍ୱାରୋହଣ ପାଇଁ ପରମେଶ୍ୱରଙ୍କର ଦିବ୍ୟଯନ୍ତ୍ର ହୋଇ କର୍ମ କରିବ। ସେ ସଂସାରର ଅବିଦ୍ୟାରେ ବାନ୍ଧି ହୋଇଯିବ ନାହିଁ ତଥା ଅବିଦ୍ୟାରେ ନିଜକୁ ସୀମିତ କରି କିଳି ହୋଇ ରହିବ ନାହିଁ।

ସଂସାରଟିର ମୁଖ୍ୟ ବଳ ହେଉଛି କର୍ମ। କର୍ମ ଭିତରେ ଜ୍ଞାନ ଓ ଭକ୍ତି ଯୋଡ଼ି ହୋଇ ରହିଥାଏ। କର୍ମ, ଭକ୍ତି, ଜ୍ଞାନର ପୂର୍ଣ୍ଣସନ୍ତୁଳିତ ଗତିଦ୍ୱାରା ଏ ପାର୍ଥିବ ମୃତ୍ୟୁ କବଳିତ ସଂସାର ରୂପାନ୍ତରିତ ହୋଇ ଆଲୋକିତ ସଂସାରରେ ପରିଣତ ହେବାର ସୁଯୋଗ ରହିଛି। ତେଣୁ ଯେଉଁ ଅଭୀପ୍ସୁ ସାଧକ ଉଭୟ ସଂସାର ଓ ଭୌତିକ ଜ୍ଞାନ ଏବଂ କ୍ରମେ ବିଦ୍ୟାକୁ ଏକାଠି ବୁଝିପାରେ, ସେ ମୃତ୍ୟୁର ସୋପାନକୁ ଖୁସିରେ ପାରହୋଇ ପରାଜଗତରେ ଉପନୀତ ହୁଏ ଏବଂ ପରା ଓ ଅପରା ଜଗତକୁ ସଂଯୋଗ କରି ପରମେଶ୍ୱରଙ୍କ ନବସର୍ଜନାପାଇଁ ଦିବ୍ୟକର୍ମୀ ହୋଇପାରେ।

ଅଷ୍ଟମ ଦିନର ସକାଳ ଓଳିରେ ତିନୋଟି ମନ୍ତ୍ର (୧୨,୧୩,୧୪) କୁ ଆବୃତ୍ତି କରାଯାଇ ପଢ଼ା ଯାଇଥିଲା। ଉପର ଓଳି ତିନୋଟି ମନ୍ତ୍ରର ଆଲୋଚନା ପର୍ବ ଶେଷହେଲା। ଏହି ତିନୋଟି ମନ୍ତ୍ରକୁ ମୁଁ ଯେପରି ବୁଝିଲି

ତାହା ଏଠାରେ ବର୍ଣ୍ଣନା କରୁଛି ।

ଦ୍ୱାଦଶ ମନ୍ତ୍ର -

ଅନ୍ଧଂ ତମଃ ପ୍ରବିଶନ୍ତି ୟେଽସମ୍ଭୂତିମୁପାସତେ
ତତୋ ଭୂୟ ଇବ ତେ ତମୋ ୟ ଉ ସଂମ୍ଭୂତ୍ୟାଂ ରତାଃ ॥

ତ୍ରୟୋଦଶ ମନ୍ତ୍ର -

ଅନ୍ୟଦେବାହୁଃ ସମ୍ଭବାଦନ୍ୟଦାହୁରସଂଭବାତ୍ ।
ଇତି ଶୁଶ୍ରୁମ ଧୀରାଣାଂ ୟେ ନସ୍ତଦ୍ୱିଚଚକ୍ଷିରେ ॥

ଚତୁର୍ଦ୍ଦଶ ମନ୍ତ୍ର -

ସଂଭୂତିଞ୍ଚ ବିନାଶଞ୍ଚ ୟସ୍ତଦ୍ୱେଦୋଭୟଂ ସହ ।
ବିନାଶେନ ମୃତ୍ୟୁଂ ତୀର୍ତ୍ତ୍ୱା ସମ୍ଭୂତ୍ୟାମୃତମଶ୍ନୁତେ ॥

ସନ୍ଧ୍ୟାବେଳେ ଭଗବାନ ଭାଇଙ୍କ ବାସନାକୁ ତୃପ୍ତ କରିବାପାଇଁ ପଲମ ପୋଡ଼ପିଠା ଆସି ଶିବିରରେ ପହଞ୍ଚିଗଲା । ମାତ୍ର ଏହି ପିଠା ପରଦିନ ସକାଳେ ସମସ୍ତଙ୍କ ପାଇଁ ଉପଲବ୍ଧ ହେଲା । ଆଜି ସକାଳ ଓ ଉପରଓଳିର କାମ ଭଲ ହୋଇଥିଲା । ଏଥିପାଇଁ ସନ୍ତୋଷ ଲାଗିଲା ।

ଉପରଓଳି ଚାରିଟା ପରେ ଆମେ ସମସ୍ତେ ରାମଭାଇଙ୍କ ନିର୍ଦ୍ଦେଶ ଅନୁସାରେ ପ୍ୟାଣ୍ଟ ସାର୍ଟ ପିନ୍ଧି ବିନିଦା ଗାଁ ଭିତରକୁ ବାହାରିଲୁ । ଗାଁଟି ଭାରି ଭଲ ଲାଗିଲା । ଦାଣ୍ଡ ଓ ପିଣ୍ଡାଗୁଡ଼ିକ ଭାରି ପରିଷ୍କାର ପରିଚ୍ଛନ୍ନ, କାନ୍ଥ ଗୁଡ଼ିକ ଗୋବର ମାଟିରେ ଭଲଭାବରେ ଲିପା ପୋଛା ହୋଇ ମନଲାଖି ହୋଇ ରହିଥିଲେ । ଦୟାନିଧି ଭାଇଙ୍କ ଘରେ ପିଜୁଳି, ମୁଢ଼ି, ପକୁଡ଼ି ଖାଇବାକୁ ମିଳିଲା । ଏହାପରେ ତାଙ୍କ ଘରେ ସୁସ୍ୱାଦୁ ଗରମ ଚାହା ପାନ କଲୁ ଓ ଗାଁ ବୁଲିଲୁ । ରାମଭାଇ ଓ କୃଷ୍ଣଭାଇ ଆମର ଗାଇଡ୍ ପରି କାମ ତୁଲାଉଥିଲେ ।

ଆଜି ରାତିର ଆଲୋଚନା ଅତ୍ୟନ୍ତ ଗମ୍ଭୀର ଥିଲା । ଆମେ ନୀରବତାର

ମନନ କରିବାପାଇଁ ନିମଗ୍ନ ରହୁଥିଲୁ। ଆମର ଏହି ବାହ୍ୟ ଜଗତଟି କିପରି କେତେ କୃତ୍ରିମ ବୋଲି ଶ୍ରୀମା କହିଥିଲେ - ସେ ସମ୍ବନ୍ଧରେ ଆଲୋଚନା ଖିଅ ଚାରିଆଡ଼କୁ ପ୍ରସାରିତ ହୋଇଯାଉଥିଲା।

ରାତି ଆଲୋଚନା ସମୟରେ ମହେଶ ଭାଇ ଓ କମର୍ଦ୍ଦାର ବସନ୍ତଭାଇ ଆସି ପହଞ୍ଚିଲେ। ଆଲୋଚନା ସମସ୍ତଙ୍କୁ ଏପରି ନୀରବ ଓ ସ୍ଥିର କରି ଦେଇଥିଲା ଯେ ଆଜିପାଇଁ ସାଂସ୍କୃତିକ କାର୍ଯ୍ୟକ୍ରମଟି ପୂରା ମଉଳିଗଲା।

ଆଜି ଦିନର ହସ କଥା - ସକାଳ କାମ ଆଜି ଶୀଘ୍ର ଆରମ୍ଭ ହୋଇଥିଲା। ଅନନ୍ତଭାଇ, ରାମଭାଇ ଆଜିର ମାଟି ଖୋଳା କାମର ମୁଖ୍ୟ ଶ୍ରମିକ। ସେମାନେ ହାଲିଆ ହୋଇ ବସି ପଡୁଥିଲେ। ତେଣୁ ବାବା (ଦିବଂଗତ ସୁରେନ୍ଦ୍ର ଭାଇ) ସେମାନଙ୍କ ପାଇଁ ଠିଆହୋଇ ଦମ୍ ନେବେ କି ବୋଲି ଅନୁମତି ମାଗୁଥିଲେ।

ଆଜି ନବମ ଦିନ-ଶିବିରର ଶେଷ ପର୍ଯ୍ୟାୟ ହାଜର। ପ୍ରକୃତିକୋଳରେ ନିଛକ ଗ୍ରାମୀଣ ପରିବେଶଟି ଭିତରେ ଉପନିଷଦ ଅଧ୍ୟୟନ ଅନେକ ଚିନ୍ତନ ଉଦ୍ରେକ କରୁଥିଲା। ଶେଷ ଦୁଇଦିନରେ ମନ୍ତ୍ର ୧୫ ରୁ ୧୮ ପର୍ଯ୍ୟନ୍ତ ଆବୃତ୍ତି କରାଯାଇ ଆଲୋଚନା କରାଯାଇଥିଲା।

ପଞ୍ଚଦଶ ମନ୍ତ୍ର -

**ହିରଣ୍ମୟେନ ପାତ୍ରେଣ ସତ୍ୟସ୍ୟାପିହିତଂ ମୁଖମ୍ ।**
**ତତ୍ତ୍ୱଂ ପୂଷନ୍ନପାବୃଣୁ ସତ୍ୟଧର୍ମାୟ ଦୃଷ୍ଟୟେ ॥**

ଷୋଡ଼ଶ ମନ୍ତ୍ର -

**ପୂଷନ୍ନେକର୍ଷେ ଯମ ସୂର୍ଯ୍ୟ ପ୍ରାଜାପତ୍ୟ ବ୍ୟୂହ ରଶ୍ମୀନ୍ ସମୂହ ।**
**ତେଜୋ ଯତ୍ତେ ରୂପଂ କଲ୍ୟାଣତମଂ ତତ୍ତେ ପଶ୍ୟାମି**
**ଯୋଽସାବସୌ ପୁରୁଷଃ ସୋଽହମସ୍ମି ॥**

ଆମେ ଯେଉଁ ପରମ ସତ୍ୟଟିକୁ ଅନୁସନ୍ଧାନ କରୁଛୁ, ତାହା ଏକ ସୁବର୍ଣ୍ଣ ଆବରଣ (ଘୋଡଣୀ) ଦ୍ୱାରା ଆବୃତ ହୋଇ ରହିଛି। ହେ ପରମପୁରୁଷ ତୁମେ ସେହି ଆବରଣଟିକୁ ଛିନ୍ନ କରିଦିଅ। ଫଳରେ ସତ୍ୟର ବିଧାନଟି ଆମର ଦୃଷ୍ଟି ସମ୍ମୁଖକୁ ଆସୁ। ସୂର୍ଯ୍ୟରୂପୀ ଅନ୍ତରାତ୍ମାର ପ୍ରକାଶକଙ୍କୁ ପ୍ରାର୍ଥନା କରୁଛୁ କି, ସେ ଆମ ଭିତରେ ଦୁଃଖ ଯନ୍ତ୍ରଣା ପ୍ରଦାନ କରୁଥିବା ତେଜ ସକଳକୁ ଦୂର କରିଦିଅନ୍ତୁ ଏବଂ ସୁଖପ୍ରଦାନ କରୁଥିବା ତେଜକୁ ଏକତ୍ର କରି ଦିଅନ୍ତୁ। ପରମପୁରୁଷଙ୍କର ମଙ୍ଗଳମୟ ରୂପ ଭିତରେ ଆମେ ଅଧିଷ୍ଠିତ। "ସୋ' ଅହମ୍" - ସିଏ ଯିଏ ମୁଁ ସିଏ। ସକଳ ଭୂତରେ ସେ ବିଦ୍ୟମାନ ଏବଂ ସକଳେ ତାଙ୍କ ଭିତରେ ବିଦ୍ୟମାନ। ଏକଥା ସାଧାରଣ ସ୍ତରର ମନରେ ବୁଝି ହେବ ନାହିଁ। ଉଚ୍ଚସ୍ତରର ମନରେ ଏହି ଅନୁଭୂତିଟି ଉପଲବ୍ଧ ହେବ।

ଆମର ସ୍ଥିତିଟିକୁ ଆମେ ନିମ୍ନମତେ କଳ୍ପନା କରିପାରିବା। ଆମର ଶରୀରଟି ଆମର ଦୃଶ୍ୟମାନ ଅଧିଷ୍ଠାନ। ଏହାରି ଭିତରେ ପ୍ରାଣ ଓ ମନ ସକ୍ରିୟ ଭାବରେ କ୍ରିୟାଶୀଳ। ଅଧିଷ୍ଠାନଟିର ଅନ୍ତର ପ୍ରଦେଶରେ ଚୈତ୍ୟସତ୍ତା ବିଦ୍ୟମାନ। ଚୈତ୍ୟସତ୍ତା ଉଚ୍ଚତର ଜୀବନଯାତ୍ରାର ପଥପ୍ରଦର୍ଶକ ଭାବରେ କାର୍ଯ୍ୟ କରିଚାଲିଛନ୍ତି। ମନର ପ୍ରସ୍ତୁତି ଓ ଗ୍ରହଣଶୀଳତା ଅନୁସାରେ ସେ ତାଙ୍କର ନିର୍ଦ୍ଦେଶ ପ୍ରଦାନ କରିଥାନ୍ତି। ଶରୀର, ପ୍ରାଣ, ମନର ଏହି ଦୃଶ୍ୟମାନ ଅଧିଷ୍ଠାନଟିକୁ ଆମେ ଅପରା ପ୍ରକୃତିର ଅବସ୍ଥାନ ବୋଲି ବୁଝିବା। ଅପରା ପ୍ରକୃତି ଅର୍ଥାତ୍ ଶରୀର-ପ୍ରାଣ-ମନ ଜଗତରେ ଅନେକ ସୀମିତତା ଭରି ରହିଛି। ଏଠାରେ ଅନ୍ଧକାର ଓ କୁହେଳିକା ମଧ୍ୟରେ ଅନେକ ସତ୍ୟ ପ୍ରଚ୍ଛଦପଟରେ ରହିଯାଏ। ଶରୀରରେ କାମ କରୁଥିବା ଇନ୍ଦ୍ରିୟମାନେ ସବୁକିଛିକୁ ଠିକ୍ ଭାବରେ ଜାଣିପାରନ୍ତି ନାହିଁ। ଚକ୍ଷୁ ସବୁ ଦେଖିପାରେ ନାହିଁ, କର୍ଣ୍ଣ ସବୁ ଶୁଣିପାରେ ନାହିଁ, ନାସା ସବୁକିଛି ଘ୍ରାଣ କରିପାରେ ନାହିଁ, ଜିହ୍ୱା ସବୁ ପ୍ରକାର ସ୍ୱାଦକୁ ବାରିପାରେ ନାହିଁ, ଚର୍ମ ସବୁ ସ୍ପର୍ଶକୁ ଜାଣିପାରେ



ନାହିଁ। ଇନ୍ଦ୍ରିୟ ଗୃହୀତ ସବୁ ସନ୍ଦେଶକୁ ବିଶ୍ଳେଷଣ କରି ବାସ୍ତବ ଜୀବନରେ ପ୍ରୟୋଗ କରିବା ପାଇଁ ମସ୍ତିଷ୍କ ସହାୟକ ହୋଇପାରେ ନାହିଁ। ଚତୁଃପାର୍ଶ୍ୱର ପ୍ରଭାବରେ ମନ ପ୍ରଭାବିତ ହୁଏ ଓ ଚତୁର୍ପାର୍ଶ୍ୱକୁ ମଧ୍ୟ ପ୍ରଭାବିତ କରିଥାଏ। ପ୍ରତୀତ ହେଉଥିବା ସତ୍ୟପଛରେ ଲୁଚି ରହିଥିବା ମିଥ୍ୟା, ଏବଂ ପ୍ରତୀତ ହେଉଥିବା ମିଥ୍ୟା ପଛରେ ଲୁଚି ରହିଥିବା ସତ୍ୟକୁ ମନ ଠିକ୍ ଭାବରେ ଜାଣି ନପାରି ଭୁଲ ଭ୍ରାନ୍ତିର ସମସ୍ୟା ଭିତରେ ମଣିଷ ନିଜ ଜୀବନକୁ ଯନ୍ତ୍ରଣା ଦଗ୍ଧ କରି ପକାଏ। ଶାନ୍ତ ନୀରବ ହୋଇ ଆଉ ଏକ ଉଚ୍ଚତର ଜୀବନଯାତ୍ରା ପାଇଁ ନିଜକୁ ପ୍ରସ୍ତୁତ କରିବା ସକାଶେ ଅବହେଳା କରେ।

ମଣିଷ ମନର ଏକ ସୁଦୂର ପ୍ରସାରୀ ବିସ୍ତାର ରହିଛି। ଏହା ଶାନ୍ତ ଓ ନୀରବ ହୋଇଗଲେ ଅନେକ ସୋପାନ ଉତ୍ତରଣ କରିଯାଇପାରେ ଏବଂ ଅଦୃଶ୍ୟ ଭୂମିର ଅନେକ ବିସ୍ତାରିତ ଚେତନା କ୍ଷେତ୍ରରେ ଉପନୀତ ହୋଇ ଆନନ୍ଦ ଲାଭ କରେ। ଆହୁରି ଅନେକ ଚେତନାର ଶୃଙ୍ଗ ଆରୋହଣ କରିବାକୁ ଅଛି ବୋଲି ମନ ଜାଣିପାରେ। ସବୁପ୍ରକାର ସୃଷ୍ଟିର ମୂଳରେ ଗୋଟିଏ ତତ୍ତ୍ୱ ରହିଛି। ଯେଉଁଠି "ସର୍ବେ ହୁଅନ୍ତି ଏକ ମେଳ, ନଥାଏ ବହୁବିଧ ଖେଳ"। ମନ ଏହି ସ୍ତରକୁ ଆରୋହଣ କରି ଆନନ୍ଦ ଓ ପରମାନନ୍ଦ ପ୍ରାପ୍ତିପାଇଁ ଆକର୍ଷିତ ହୁଏ। ମାତ୍ର ଶରୀର ଓ ପ୍ରାଣ ଏଥିପାଇଁ ପ୍ରସ୍ତୁତ ହୋଇ ନପାରି ମନକୁ ଅନେକ ସମୟରେ ସହଯୋଗ କରି ପାରନ୍ତି ନାହିଁ। ଶରୀର ପ୍ରାଣ ଓ ମନର ଊର୍ଦ୍ଧ୍ୱରେ ଥିବା ଏବଂ ମଣିଷ ଜୀବନ ସହ ସଂଯୁକ୍ତ ହୋଇ ରହିଥିବା ଜଗତଟିକୁ ଆମେ ପରାଜଗତ ବୋଲି ଜାଣିବା। ଏହି ଜଗତର ସର୍ବୋଚ୍ଚ ସ୍ତରରେ ରହିଛି "ସଚ୍ଚିଦାନନ୍ଦ"।

ପରାଜଗତ ଓ ଅପରାଜଗତକୁ ଯୋଡିବାପାଇଁ ଏକ ମନସ୍ତାତ୍ତ୍ୱିକ ପ୍ରକ୍ରିୟା ସର୍ବଦା କାର୍ଯ୍ୟ କରୁଥାଏ। ଏହା ହେଉଛି ଏକ ମଧ୍ୟବର୍ତ୍ତୀ ପ୍ରକ୍ରିୟା,

ଯାହାକି ଏକ ମହାନ୍ ଯାତ୍ରାପାଇଁ ଉଦ୍ଦିଷ୍ଟ। ସାଂସାରିକ ଜୀବନର ମୋହ, ମାୟା, ଅହଂଗତ ଜୀବନର ପ୍ରଭାବରୁ ନିଜକୁ ମୁକ୍ତ କରି ନପାରିଲେ ସୁବର୍ଣ୍ଣ ଘୋଡଣି ଦ୍ୱାରା ଆବୃତ ଥିବା ମହାନ ପ୍ରକାଶୋନ୍ମୁଖୀ ସତ୍ୟ ଓ ଜ୍ୟୋତିକୁ ଆମେ କେବେ ବି ଅନୁଭବ କରିପାରିବା ନାହିଁ।

**ସପ୍ତଦଶ ମନ୍ତ୍ର -**

ବାୟୁରନିଳମମୃତମଥେଦଂ ଭସ୍ମାନ୍ତଂ ଶରୀରମ୍ ।
ଓଁ କ୍ରତୋ ସ୍ମର କୃତଂ ସ୍ମର କ୍ରତୋ ସ୍ମର କୃତଂ ସ୍ମର ॥

**ଅଷ୍ଟଦଶ ମନ୍ତ୍ର -**

ଅଗ୍ନେ ନୟ ସୁପଥା ରାୟେ ଅସ୍ମାନ୍ ବିଶ୍ୱାନି ଦେବ ବୟୁନାନି ବିଦ୍ୱାନ୍।
ଯୁୟୋଧ୍ୟସ୍ମଜ୍ଜୁହୁରାଣମେନୋ ଭୂୟିଷ୍ଠାଂ ତେ ନମ ଉକ୍ତିଂ ବିଧେମ ॥

ଆମ ଶରୀର ଜନ୍ମଠାରୁ ମୃତ୍ୟୁ ମଧ୍ୟରେ ଜୀବନ ଯାତ୍ରା କରିଥାଏ। ଶରୀର ଭିତରେ ପ୍ରାଣ ଜୀବନ ଶକ୍ତି ଦେଇଯାଏ, ମନ ବିଚାର ଶକ୍ତି ଦେଇଥାଏ। ଜୀବାତ୍ମାଙ୍କର ଅଂଶସ୍ୱରୂପ ଚୈତ୍ୟସତ୍ତା ଉଚ୍ଚତର ଜୀବନ ପାଇଁ ବାଟ ଦେଖାଇଥାନ୍ତି। ମୋଟ ଉପରେ ଜନ୍ମ ମୃତ୍ୟୁର ଦୂରନ୍ତ ପଥଟି ଆମ ଜୀବନଯାତ୍ରାର ଏ ପାର୍ଥିବ ସ୍ଥିତିର ଏକ ପ୍ରକଟିତ ଗତିବିଧି। ଏହା ମଧ୍ୟରେ ଅନେକ କିଛି ଅଦୃଶ୍ୟ ଭାବରେ ନିହିତ ହୋଇ ରହିଛି, ଯାହା ଉପରେ ଆମେ ବିଶେଷ କିଛି ଧାରଣା କରିବାକୁ ଏପର୍ଯ୍ୟନ୍ତ ସମର୍ଥ ହୋଇପାରିନାହୁଁ।

ଅନେକ ଶାସ୍ତ୍ରକାର ଓ ପଣ୍ଡିତ ଶରୀରକୁ ଖୁବ୍ ନ୍ୟୁନ ଭାବରେ ଆମ ଆଗରେ ବର୍ଣ୍ଣନା କରିଛନ୍ତି। ଯେପରିକି ଏହା ମଳମୂତ୍ରଧାରୀ, ଦୁଃଖ ଯନ୍ତ୍ରଣା ଜର୍ଜରିତ ଓ ମୃତ୍ୟୁ କବଳିତ ଏବଂ ନର୍କ ସଦୃଶ। ଶରୀର ଜୀବାତ୍ମା ପାଇଁ ଏକ ବନ୍ଧନ ଏବଂ ଏଥିରୁ କୌଣସିମତେ ମୁକ୍ତି ପାଇବା ଆମ ସାଧନାର କାମ୍ୟ। ଆମେ ଯେଉଁ ମଟର ଗାଡ଼ିଟି କିଣି ଏତେ ଶ୍ରଦ୍ଧାରେ ଚଳାଉଛେ,



ସେଥିରୁ ଧୂଆଁ ବାହାରୁଛି, ସେ ଶବ୍ଦ କରୁଛି, ଦୁର୍ଘଟଣାଗ୍ରସ୍ତ ହେଲେ ଭାଙ୍ଗି ଯାଉଛି - ଏ କ୍ଷେତ୍ରରେ ଆମେ କ'ଣ ଗାଡ଼ିଟିକୁ ତିରସ୍କାର କରୁଛେ କି ? ଯଦି ଆମ ଶରୀରଟି ନର୍କ ସଦୃଶ ଏକ ବନ୍ଧନ, ତେବେ ସୃଷ୍ଟିକର୍ତ୍ତା କେବେ ବି ଏହାକୁ ଏତେ ସୁନ୍ଦର ଭାବରେ ତିଆରି କରିନଥାନ୍ତେ। ଏ ଧରାପୃଷ୍ଠରେ କୋଟି କୋଟି ସଂଖ୍ୟାରେ ଜୀବଜନ୍ତୁ ଓ ମଣିଷଙ୍କର ଶରୀର ବିଦ୍ୟମାନ। ଶରୀର ଥିବାରୁ ସେମାନେ ଖୁସିରେ ଚଳପ୍ରଚଳ ହେଉଛନ୍ତି। ପରମେଶ୍ୱର ଏ ବିଶାଳ ବିଶ୍ୱ ବ୍ରହ୍ମାଣ୍ଡକୁ ସୃଷ୍ଟି କରିଛନ୍ତି। ମଣିଷର ଶରୀର ମାଧ୍ୟମରେ ମନକୁ ପ୍ରକାଶ କରାଇଛନ୍ତି। ମନଯୋଗୁଁ ମଣିଷ ବିସ୍ମୟକର କାର୍ଯ୍ୟ ସଂପାଦନ କରିପାରୁଛି। ଓଡ଼ିଆ ଭାଗବତରେ ଲେଖାଯାଇଛି, "ମଣିଷ ଦେହେ ଦିବ୍ୟଜ୍ଞାନ, ଦେଖି ସନ୍ତୋଷ ଭଗବାନ"। ଶରୀର ମନ ଦ୍ୱାରା ପରିଚାଳିତ ହୋଇଥାଏ। ତେଣୁ କହିବାକୁ ଗଲେ, ଶରୀର ପ୍ରକୃତରେ ବନ୍ଧନ ନୁହଁ, ମନ ବନ୍ଧନ ସୃଷ୍ଟି କରିଥାଏ।

Mind creates the chain and not the body - Sri Aurobindo (Ref- Birth & Death, Ishopanishad)

ଏହି ଶିବିରରେ କେଦାରଭାଇଙ୍କ ସହ ପରିଚୟ ଅନେକ ଉତ୍ସାହଜନକ ଥିଲା। ସେ ଥିଲେ ଜଣେ ନିଜ ଗୋଡ଼ରେ ଠିଆ ହେବା ମଣିଷ। ଯାହାକୁ କହନ୍ତି Self built man। ମୁଣ୍ଡ ଖଟାଇ କାମକରିବା ଲୋକ। ଆମକୁ ଯେପରି ସେ ଭଲ ଲାଗିଛନ୍ତି, ତାଙ୍କୁ ବି ଆମେ ସେପରି ଭଲ ଲାଗିଛୁ। ଏଠାରେ ଦୟାନିଧିଭାଇ ଓ ରାମଭାଇଙ୍କର ଏହି ନବଉନ୍ମେଷ ଶିକ୍ଷାକେନ୍ଦ୍ରଟିକୁ ପାଦେପାଦେ ଆଗେଇ ନେବାପାଇଁ ଅନେକ ଆଗ୍ରହ ରହିଛି। ସେମାନେ ଅତି ସରଳ ଏବଂ ତାଙ୍କ ମନରେ ଅନେକ ଉତ୍ସାହ ରହିଛି।

ଆଜି ଡିସେମ୍ବର ୩୧ ତାରିଖ, ଶିବିରର ଶେଷ ଦିନ । ରାତିରେ ଶିବିର ସାଙ୍ଗ ହେଲା। ମାତୃ ପତାକା ଅବତରଣ କରି ସମସ୍ତେ ଶୋଇବାକୁ

ଗଲୁ। ପରଦିନ ସକାଳୁ ନିଜନିଜ ଜାଗାକୁ ବାହାରିବା ପାଇଁ ସମସ୍ତେ ପ୍ରସ୍ତୁତ ହୋଇଗଲେ।

## ବିଦାୟ

ଜାନୁଆରୀ ୧ ତାରିଖ, ନୂତନ ବର୍ଷର ପ୍ରଥମ ସକାଳ। ବିଦାୟ କାଳୀନ ଆଖିଗୁଡ଼ିକରେ ପ୍ରକୃତି ଓ ଆତ୍ମା ଉଦ୍‌ଭାସିତ ହୋଇ ଉଠୁଥିଲେ। ଚକ୍ଷୁଡୋଳାଗୁଡ଼ିକ ସିକ୍ତ ରହିଥିଲେ। ଓଠରେ ଭରି ରହିଥିଲା ହସ ଓ ରବୀନ୍ଦ୍ର ସଙ୍ଗୀତର ମହନୀୟ ମୃଦୁଗାନ।

ଆମାଦେର ଯାତ୍ରା ହଲୋ ସୁରୁ ଓଗୋ କର୍ଣ୍ଣଧାର
ତୋମାରେ କରି ନମସ୍କାର,
ବାତାସ ଉଠୁକ୍, ତୁଫାନ୍ ଛୁଟୁକ୍ ଫିରବୋନା ଗୋ ଆର।

ଶଗଡ଼ ଅପେକ୍ଷା କରିଥାଏ ଆମର ବ୍ୟାଗ୍ ବସ୍ତାନି ବୋହିବା ପାଇଁ। ସାଇକେଲ ସାଙ୍ଗରେ ଆମ ପାଦ ପ୍ରସ୍ତୁତ ହୋଇ ରହିଥାଏ ପାଞ୍ଚ କିମି ରାସ୍ତା ଚାଲି ମୁଖ୍ୟ ରାସ୍ତାପାଖରେ ପହଞ୍ଚିବା ପାଇଁ। ନାଲିବସ୍‌ରେ ଚଢ଼ି ଆମେ କେନ୍ଦୁଝର ଗଡ଼ରେ ମଧ୍ୟାହ୍ନରେ ପହଞ୍ଚିଯିବୁ। ସେଠାରୁ ଯିଏ ଯାହା ବାଟ ଧରିବାପାଇଁ ବସ୍ ଧରିବେ।

ବିଦାୟ ରାମଭାଇ, କୃଷ୍ଣଭାଇ, ଦୟାନିଧିଭାଇ, ଶିବିରର ସମସ୍ତ ଭାଇଭଉଣୀ ଓ କୁନିକୁନି ପିଲାମାନେ।

• • •

# ईशोपनिषद

## ଈଶୋପନିଷଦ୍

### ମୂଳ ମାତ୍ରମ୍

ॐ पूर्णमदः पूर्णमिदं पूर्णात् पूर्णमुदच्यते ।
पूर्णस्य पूर्णमादाय पूर्णमेवावशिष्यते ॥
ॐ शान्तिः शान्तिः शान्तिः ॥

ଓଁ ପୂର୍ଣ୍ଣମଦଃ, ପୂର୍ଣ୍ଣମିଦଂ, ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ ।
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ॥
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ॥

ईशावास्यमिदं सर्वं यत् किञ्च जगत्यां जगत् ।
तेन त्यक्तेन भुञ्जीथा मा गृधः कस्यस्विद् धनम् ॥१

ଈଶାବାସ୍ୟମିଦଂ ସର୍ବଂ ଯତ୍କିଞ୍ଚ ଜଗତ୍ୟାଂ ଜଗତ୍ ।
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟ ସ୍ୱିଦ୍ଧନମ୍ ॥ ୧ ॥

कुर्वन्नेवेह कर्माणि जिजीविषेच्छतं समाः ।
एवं त्वयि नान्यथेतोऽस्ति न कर्म लिप्यते नरे ॥२।

କୁର୍ବନ୍ନେବେହ କର୍ମାଣି ଜିଜୀବିଷେଚ୍ଛତଂ ସମାଃ ।
ଏବଂ ତ୍ୱୟି ନାନ୍ୟଥେତୋଽସ୍ତି ନ କର୍ମ ଲିପ୍ୟତେ ନରେ ॥ ୨ ॥



असूर्या नाम ते लोका अन्धेन तमसा वृताः।
तांस्ते प्रेत्याभिगच्छन्ति ये के चात्महनो जनाः।।३।

ଅସୂର୍ଯ୍ୟା ନାମ ତେ ଲୋକା ଅନ୍ଧେନ ତମସାବୃତାଃ ।
ତାଁସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି ଯେ କେ ଚାତ୍ମହନୋ ଜନାଃ ॥ ୩ ॥

अनेजदेकं मनसो जवीयो नैनद् देवा आप्नुवन् पूर्वमर्षत्।
तद् धावतोऽन्यानत्येति तिष्ठत् तस्मिन्नपो मातरिश्वा दधाति।।४।

ଅନେଜଦେକଂ ମନସୋ ଜବୀୟୋ ନୈନଦ୍ଦେବା ଆପ୍ନୁବନ୍ପୂର୍ବମର୍ଷତ୍ ।
ତଦ୍ଧାବତୋଽନ୍ୟାନତ୍ୟେତି ତିଷ୍ଠତ୍ତସ୍ମିନ୍ନପୋ ମାତରିଶ୍ୱା ଦଧାତି ॥ ୪ ॥

तदेजति तन्नैजति तद् दूरे तद्वन्तिके।
तदन्तरस्य सर्वस्य तदु सर्वस्यास्य बाह्यतः।।५।

ତଦେଜତି ତନ୍ନୈଜତି ତଦ୍ଦୂରେ ତଦ୍ୱନ୍ତିକେ ।
ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ ॥ ୫ ॥

यस्तु सर्वाणि भूतानि आत्मन्येवानुपश्यति।
सर्वभूतेषु चात्मानं ततो न विजुगुप्सते।।६।

ଯସ୍ତୁ ସର୍ବାଣି ଭୂତାନି ଆତ୍ମନ୍ୟେବାନୁପଶ୍ୟତି ।
ସର୍ବଭୂତେଷୁ ଚାତ୍ମାନଂ ତତୋ ନ ବିଜୁଗୁପ୍ସତେ ॥ ୬ ॥

यस्मिन् सर्वाणि भूतानि आत्मैवाभूद् विजानतः।
तत्र को मोहः कः शोक एकत्वमनुपश्यतः।।७।

ଯସ୍ମିନ୍ସର୍ବାଣି ଭୂତାନି ଆତ୍ମୈବାଭୂଦ୍ ବିଜାନତଃ ।
ତତ୍ର କୋ ମୋହଃ କଃ ଶୋକ ଏକତ୍ୱମନୁପଶ୍ୟତଃ ॥ ୭ ॥



स पर्यगाच्छुक्रमकायमव्रणमस्नाविरं शुद्धमपापविद्धम्।
कविर्मनीषी परिभूः स्वयम्भूर्याथातथ्यतोऽर्थान् व्यदधाच्छाश्वतीभ्यः समाभ्यः।।८।

ସ ପର୍ଯ୍ୟଗାଚ୍ଛୁକ୍ରମକାୟମବ୍ରଣମସ୍ନାବିରଂ
ଶୁଦ୍ଧମପାପବିଦ୍ଧମ୍।
କବିର୍ମନୀଷୀ ପରିଭୂଃ ସ୍ୱୟମ୍ଭୂଃୟାଥାତଥ୍ୟତୋଽର୍ଥାନ୍
ବ୍ୟଦଧଚ୍ଛାଶ୍ୱତୀଭ୍ୟଃ ସମାଭ୍ୟଃ ॥ ୮ ॥

अन्धं तमः प्रविशन्ति येऽविद्यामुपासते।
ततो भूय इव ते तमो य उ विद्यायां रताः।।९।

ଅନ୍ଧଂ ତମଃ ପ୍ରବିଶନ୍ତି ଯେଽବିଦ୍ୟାମୁପାସତେ।
ତତୋ ଭୂୟ ଇବ ତେ ତମୋ ଯ ଉ ବିଦ୍ୟାୟାଂରତାଃ ॥ ୯ ॥

अन्यदेवाहुर्विद्यया अन्यदाहुरविद्यया।
इति शुश्रुम धीराणां ये नस्तद् विचचक्षिरे।।१०।

ଅନ୍ୟଦେବାହୁର୍ବିଦ୍ୟୟାଽନ୍ୟଦାହୁରବିଦ୍ୟୟା।
ଇତି ଶୁଶ୍ରୁମ ଧୀରାଣାଂ ଯେ ନସ୍ତଦ୍ୱିଚଚକ୍ଷିରେ॥ ୧୦ ॥

**विद्याञ्च अविद्याञ्च यस्तद् वेदो भयं सह।**
**अविद्यया मृत्युं तीर्त्वा विद्ययामृतमश्नुते।।११।**

ବିଦ୍ୟାଂଚାବିଦ୍ୟାଂଚ ଯସ୍ତଦ୍ୱେଦୋଭୟଂ ସହ।
ଅବିଦ୍ୟୟାଂ ମୃତ୍ୟୁଂ ତୀର୍ତ୍ୱା ବିଦ୍ୟୟାଽମୃତଶ୍ନୁତେ॥ ୧୧॥

अन्धं तमः प्रविशन्ति येऽसम्भूतिमुपासते।
ततो भूय इव ते तमो य उ सम्भूत्यां रताः।।१२।

ଅନ୍ଧଂ ତମଃ ପ୍ରବିଶନ୍ତି ଯେଽସମ୍ଭୂତିମୁପାସତେ
ତତୋ ଭୂୟ ଇବ ତେ ତମୋ ଯ ଉ ସଂଭୂତ୍ୟାଂ ରତାଃ ॥ ୧୨ ॥

अन्यदेवाहुः सम्भवादन्यदाहुरसम्भवात्।
इति शुश्रुम धीराणां ये नस्तद् विचचक्षिरे।।१३।

ଅନ୍ୟଦେବାହୁଃ ସମ୍ଭବାଦନ୍ୟଦାହୁରସଂଭବାତ୍ ।
ଇତି ଶୁଶ୍ରୁମ ଧୀରାଣାଂ ଯେ ନସ୍ତଦ୍ୱିଚଚକ୍ଷିରେ ॥ ୧୩ ॥

सम्भूतिञ्च विनाशञ्च यस्तद् वेदो भयं सह।
विनाशेन मृत्युं तीर्त्वा सम्भूत्यामृतमश्नुते।।१४।

ସଂଭୂତିଞ୍ଚ ବିନାଶଞ୍ଚ ଯସ୍ତଦ୍ୱେଦୋଭୟଂ ସହ ।
ବିନାଶେନ ମୃତ୍ୟୁଂ ତୀର୍ତ୍ୱା ସମ୍ଭୂତ୍ୟାମୃତମଶ୍ନୁତେ ॥ ୧୪ ॥

हिरण्मयेन पात्रेण सत्यस्यापिहितं मुखम्।
तत् त्वं पूषन्नपावृणु सत्यधर्माय दृष्टये।।१५।

ହିରଣ୍ମୟେନ ପାତ୍ରେଣ ସତ୍ୟସ୍ୟାପିହିତଂ ମୁଖମ୍ ।
ତତ୍ତ୍ୱଂ ପୂଷନ୍ନପାବୃଣୁ ସତ୍ୟଧର୍ମାୟ ଦୃଷ୍ଟୟେ ॥ ୧୫ ॥

पूषन्नेकर्षे यम सूर्य प्राजापत्य व्यूह रश्मीन् समूह।
तेजो यत् ते रूपं कल्याणतमं तत् ते पश्यामि योऽसावसौ पुरुषः सोऽहमस्मि।।१६।

ପୂଷନ୍ନେକର୍ଷେ ଯମ ସୂର୍ଯ୍ୟ ପ୍ରାଜାପତ୍ୟ ବ୍ୟୁହ ରଶ୍ମୀନ୍ ସମୂହ ।
ତେଜୋ ଯତ୍ତେ ରୂପଂ କଲ୍ୟାଣତମଂ ତତ୍ତେ ପଶ୍ୟାମି
ଯୋଽସାବସୌ ପୁରୁଷଃ ସୋଽହମସ୍ମି ॥ ୧୬ ॥

वायुरनिलममृतमथेदं भस्मान्तं शरीरम्।
ॐ क्रतो स्मर कृतं स्मर क्रतो स्मर कृतं स्मर।।१७।



ବାୟୁରନିଳମମୃତମଥେଦଂ ଭସ୍ମାନ୍ତଂ ଶରୀରମ୍ ।
ଓଁ କ୍ରତୋ ସ୍ମର କୃତଂ ସ୍ମର କ୍ରତୋ ସ୍ମର କୃତଂ ସ୍ମର ॥ ୧୭ ॥

**अग्ने नय सुपथा राये अस्मान् विश्वानि देव वयुनानि विद्वान्।**
**युयोध्यस्मज्जुहुराणमेनो भूयिष्ठां ते नम उक्तिं विधेम।। १८।**

ଅଗ୍ନେ ନୟ ସୁପଥା ରାୟେ ଅସ୍ମାନ୍ ବିଶ୍ୱାନି ଦେବ ବୟୁନାନି ବିଦ୍ୱାନ୍।
ଯୁୟୋଧ୍ୟସ୍ମଜ୍ଜୁହୁରାଣମେନୋ ଭୂୟିଷ୍ଠାଂ ତେ ନମ ଉକ୍ତିଂ ବିଧେମ ॥ ୧୮ ॥







ଜନ୍ମସ୍ଥାନ : ଅନୁଗୋଳ ଜିଲ୍ଲା ତାଳଚେର ସ୍ଥିତ ଦେରା ଗ୍ରାମ
ଜନ୍ମ ତାରିଖ: ୧୯୬୧ ମସିହା ମାର୍ଚ୍ଚ ମାସ ୨୪
ଉଚ୍ଚ ମାଧ୍ୟମିକ ଶିକ୍ଷା - ଦେରା କୋଲିୟାରୀ ହାଇସ୍କୁଲ୍ (୧୯୭୫-୧୯୭୮)
ଇଣ୍ଟରମିଡ଼ିଏଟ ସାଇନ୍ସ - ରେଭେନ୍ସା ମହାବିଦ୍ୟାଳୟ (୧୯୭୮-୧୯୮୧)
ଏମବିବିଏସ୍ (ଭେଷଜ ବିଜ୍ଞାନ)- ଶ୍ରୀରାମଚନ୍ଦ୍ର ଭେଷଜ ମହାବିଦ୍ୟାଳୟ, କଟକ (୧୯୮୧-୧୯୮୬)
ଆପ୍ଲାଇଡ଼ ଏପଡ଼େମିଓଲୋଜୀ (ମାଷ୍ଟର ଡ଼ିଗ୍ରୀ) ଚେନ୍ନାଇ ସ୍ଥିତ ନ୍ୟାସନାଲ୍ ଇନଷ୍ଟିଚ୍ୟୁଟ ଅଫ୍ ଏପିଡ଼େମିଓଲୋଜୀ (୨୦୦୨-୨୦୦୪)
କର୍ମକ୍ଷେତ୍ର - ଓଡ଼ିଶା ସରକାରଙ୍କ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ

ଡାକ୍ତର ପ୍ରଧାନ ଓଡ଼ିଶା ସରକାରଙ୍କ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗରେ ଚାକିରି କରି ଗ୍ରାମାଞ୍ଚଳରେ ସ୍ୱାସ୍ଥ୍ୟସେବା ପ୍ରଦାନ କରିଛନ୍ତି। ଜିଲ୍ଲା ଓ ରାଜ୍ୟସ୍ତରରେ ବିଭିନ୍ନ ପଦ ପଦବୀରେ ରହି ଉତ୍କୃଷ୍ଟତାର ସହ ନିଜର ଜ୍ଞାନ ଓ କୌଶଳକୁ ଉପଯୋଗ କରିଛନ୍ତି ଓ ସ୍ୱାସ୍ଥ୍ୟ ସେବାରେ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଛନ୍ତି। ମାଲେରିଆ ନିୟନ୍ତ୍ରଣରେ ତାଙ୍କର 'ଦମନ' (ଦୁର୍ଗମ ଅଞ୍ଚଳରେ ମାଲେରିଆ ନିରାକରଣ) କାର୍ଯ୍ୟକ୍ରମ ଦେଶ ତଥା ବିଶ୍ୱସ୍ତରରେ ଆଦୃତି ଲାଭ କରିଛି। ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ, ନିୟୁର୍କ ୟୁନିଭରସିଟି, ଲିଭରପୁଲ ସ୍କୁଲ୍ ଅଫ ଟ୍ରପିକାଲ ମେଡ଼ିସିନ୍, ମାଲେରିଆ ମେଡ଼ିସିନ୍ ଭେଞ୍ଚର (ଜେନେଭା), ଭାରତୀୟ ଆୟୁର୍ବିଜ୍ଞାନ ସଂସ୍ଥା (ICMR), ତଥା ଦେଶ ବିଦେଶର ଅନ୍ୟାନ୍ୟ ଅନୁଷ୍ଠାନମାନଙ୍କ ତରଫରୁ ସେ ବିଭିନ୍ନ ସମୟରେ ଆମନ୍ତ୍ରିତ ହୋଇ ଓଡ଼ିଶାର ମାଲେରିଆ ଓ ଜନସ୍ୱାସ୍ଥ୍ୟ ସମ୍ପର୍କିତ କାର୍ଯ୍ୟକୁ ସୁନ୍ଦର ଭାବରେ ଉପସ୍ଥାପନ କରିଛନ୍ତି।

ଡାକ୍ତରୀ କାର୍ଯ୍ୟ ବାହାରେ ତାଙ୍କର ଆଉ ଏକ ମହତ୍ତ୍ୱପୂର୍ଣ୍ଣ ପରିଚୟ ରହିଛି। ସେ ଜଣେ ସାମାଜିକ କର୍ମୀ, ସମସ୍ତଙ୍କ ପାଇଁ ଶିକ୍ଷା, ଜନବିଜ୍ଞାନ ଓ ଜନସ୍ୱାସ୍ଥ୍ୟ ଆନ୍ଦୋଳନ ସହ ତାଙ୍କର ସଂପୃକ୍ତି ଉଲ୍ଲେଖନୀୟ।

ଶିକ୍ଷା ଓ ଆଧ୍ୟାତ୍ମିକତାକୁ ଏକତ୍ର ପ୍ରୟୋଗ କରିବା ପାଇଁ ସେ ତତ୍ପର। ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷା ଓ ପୂର୍ଣ୍ଣାଙ୍ଗ ନିରାମୟତା କାର୍ଯ୍ୟଧାରାରେ ସେ ଛାତ୍ର ଜୀବନରୁ ସାମିଲ ହୋଇଛନ୍ତି। ସେ ଡ଼େପୁଟେସନ୍‌ରେ ଯାଇ ଭାରତ ଜ୍ଞାନ ବିଜ୍ଞାନ ସମିତିରେ ପୂର୍ଣ୍ଣକାଳୀନ ଛଅ ବର୍ଷପାଇଁ କାର୍ଯ୍ୟ କରିବାର ସୁଯୋଗ ପାଇଥିଲେ। ସେତେବେଳେ ସେ ନବସାକ୍ଷର ତଥା ପିଲାଙ୍କ ପାଇଁ ଅନେକ ଛୋଟ ଛୋଟ ଆଗ୍ରହୋଦ୍ଦୀପକ ପୁସ୍ତିକାସବୁ ରଚନା କରିଛନ୍ତି। ସରଳ ଭାଷାରେ ଲେଖିଥିବା ତାଙ୍କର ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ପୁସ୍ତିକାଗୁଡ଼ିକ ବେଶ ଉପାଦେୟ। ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟୟନ ସମୟରେ ଡ଼ାକ୍ତର ପ୍ରଧାନ, ପ୍ରଫେସର ଚିତ୍ତରଞ୍ଜନ ଦାସ (ଚିତ୍ତ ଭାଇ)ଙ୍କ ସହ ନିବିଡ଼ ସମ୍ପର୍କରେ ଆସିଥିଲେ ଓ ପ୍ରଭାବିତ ହୋଇଥିଲେ। ଚିତ୍ତଭାଇଙ୍କ ସହ ମିଶି ସେ ୧୯୮୪ ମସିହାରେ ଏବର ଭଦ୍ରକ ଜିଲ୍ଲାର ମାର୍କୋଣା ପୂର୍ଣ୍ଣାଙ୍ଗ ଶିକ୍ଷାକ୍ଷେତ୍ରରେ ପ୍ରଥମ ସୁହୃତ୍ ଶ୍ରମ ଶିବିରର ଆୟୋଜନ ଓ ପରିଚାଳନା କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ସେହି ଶ୍ରମ ଶିବିରର ଅନ୍ୟତମ ଅଧ୍ୟାୟ ଏହି ପୁସ୍ତକରେ ବର୍ଣ୍ଣିତ ବିନିଦା ସୁହୃତ ଶ୍ରମ ଶିବିର। ତାଙ୍କ ରଚିତ ପୁସ୍ତକଗୁଡ଼ିକ ଓଡ଼ିଆ ପାଠକଙ୍କ ଦ୍ୱାରା ବେଶ ଆଦୃତ। ସେଗୁଡ଼ିକ ହେଲେ, ଜଣେ ଶିକ୍ଷକଙ୍କ କାହାଣୀ, ମୁଁ ଯଦି ପୁଣି ପିଲା ହୋଇଯାନ୍ତି, ବଡ଼ମାନେ ବୁଝିବେ କି?, ଦୃଶ୍ୟ ଅଦୃଶ୍ୟ। ତା' ଛଡ଼ା, 'ଅଦୃଶ୍ୟ ପ୍ରଚ୍ଛଦ' ପରି ଆଉ କେତେକ ପୁସ୍ତକ ପ୍ରକାଶନ ଅପେକ୍ଷାରେ।